ଅଷ୍ଟମ ଶ୍ରେଣୀର ଅନ୍ତରଙ୍ଗ ସାହିତ୍ୟ ରୂପେ ମାଧ୍ୟମିକ ଶିକ୍ଷାବୋର୍ଡ଼ଦ୍ୱାରା ମଞ୍ଜୁରପ୍ରାପ୍ତ ।

# ମଞ୍ଜୁଷା

ଲେଖକ :
ଅଧ୍ୟାପକ ଶ୍ରୀଧର ଦାସ, ଏମ୍. ଏ.

ନୂତନ ସଂସ୍କରଣ
୧୯୬୭

ପ୍ରକାଶକ :
କଟକ ଟ୍ରେଡ଼ିଂ କମ୍ପାନୀ
ବାଲୁବଜାର, କଟକ-୨

ମୂଲ୍ୟ : ଏକଟଙ୍କା

# ସୂଚୀପତ୍ର

# ଏବେ ପାଇଲି

ଏହା ଆଜକାଲିକା କଥା ନୁହେଁ । ଦୁଇହଜାର ବର୍ଷ ତଳର କଥା ହେବ । ସେ କାଳର ଲୋକେ ଏତେ ଚତୁର ନ ଥିଲେ କି ଏତେ କଥା ଜାଣି ନଥିଲେ । ମୋଟର ଗାଡ଼ି, ରେଳଗାଡ଼ି, ଉଡ଼ାଜାହାଜ, ରେଡ଼ିଓ ଏସବୁ ସେମାନଙ୍କୁ ଜଣା ନଥିଲା । ତେବେ ସେ କାଳରେ ବି ଆମରି ପରି ମଣିଷ ଥିଲେ । ସେମାନଙ୍କର ଶାସନଭାର ବୁଝିବାକୁ ରଜାଥିଲେ; ରଜାଙ୍କୁ ପରାମର୍ଶ ଦେବାପାଇଁ ପାତ୍ରମନ୍ତ୍ରୀମାନେ ଥିଲେ । ରଜା ସୁନ୍ଦର କୋଠାଘରେ ରହୁଥିଲେ; ସୁନା ରୁପାର ସିଂହାସନରେ ବସି ରାଜକାର୍ଯ୍ୟ ବୁଝୁଥିଲେ ।

ସେଇ ପୂର୍ବକାଳରେ ସିସିଲି ଦେଶର ଗୋଟିଏ ପ୍ରଦେଶରେ ଜଣେ ରଜା ଥିଲେ । ତାଙ୍କର ନାମ ହିଆରୋ । ସିରାକଉଜ ସହର ତାଙ୍କର ରାଜଧାନୀ ଥିଲା । ସେହି ସହରରେ ଆପଣା ଉଆସରେ ରହି ନିଜ ଗୋଟା ରାଜ୍ୟର ହାଲଚାଲ ସେ ବୁଝୁଥିଲେ, ଦୋଷୀମାନଙ୍କର ବିଚାର କରି ସେମାନଙ୍କୁ ଦଣ୍ଡ ଦେଉଥିଲେ , ଗୁଣୀ ଲୋକମାନଙ୍କୁ ପୁରସ୍କାର ଦେଉଥିଲେ ।

ବଡ଼ ବଡ଼ ରଜାଙ୍କ ପରି ହିଆରୋଙ୍କର ଗୋଟିଏ ରାଜସଭା ଥିଲା । ସେଥିରେ ତାଙ୍କ ରାଜ୍ୟର ବଡ଼ ବଡ଼ ଜ୍ଞାନୀ ଲୋକମାନେ ସ୍ଥାନ ପାଉଥିଲେ । ରଜାଙ୍କର କୌଣସି ବିଷୟରେ ସନ୍ଦେହ ହେଲେ ସେ ଏହି ପଣ୍ଡିତମାନଙ୍କ ସହ ପରାମର୍ଶ କରି କାମ କରନ୍ତି ।

ଦିନେ ରାଜାଙ୍କ ମନରେ ଗୋଟାଏ ନୂତନ ଖିଆଲ ହେଲା । ସଭା ପୂରା ଜମିଛି । ପାତ୍ରମନ୍ତ୍ରୀ ଓ ପଣ୍ଡିତମାନେ ବସିଛନ୍ତି । ରାଜା ହୁକୁମ କଲେ, "ଆମର ଗୋଟାଏ ସୁନାର ମୁକୁଟ ଦରକାର । କିନ୍ତୁ ଯେପରି ସେପରି ମୁକୁଟ ହେଲେ ଚଳିବ ନାହିଁ । ସେଇଟି ବିଶୁଦ୍ଧ ସୁନାରେ ତିଆରି ହେବ । ଆଉ କାରୁକାର୍ଯ୍ୟରେ ସାରା ପୃଥିବୀରେ ଯେପରି ତାର ସମକକ୍ଷ ନଥିବ ।"

ପ୍ରଧାନ ମନ୍ତ୍ରୀ ଦେଶ ବିଦେଶରୁ ଅନେକ ବଣିଆ ଡକାଇ ସେମାନଙ୍କୁ ରାଜାଙ୍କ ବରାଦ ଅନୁସାରେ ଗୋଟିଏ ମୁକୁଟ ତିଆରି କରିଦେବାକୁ କହିଲେ । କିନ୍ତୁ କେହି ଏପରି କାରୁକାର୍ଯ୍ୟରେ କରି ବିଶୁଦ୍ଧ ସୁନାର ମୁକୁଟ ଗଢ଼ିଦେବାକୁ ସାହସ କଲେ ନାହିଁ ।

ମନ୍ତ୍ରୀ ବଡ଼ ଚିନ୍ତାରେ ପଡ଼ି ଦିନେ ରାଜସଭାରେ ରାଜାଙ୍କୁ ଜଣାଇଲେ, "ପ୍ରଭୁ, ଉପଯୁକ୍ତ କାରିଗର ମିଳୁନାହାନ୍ତି । ମୁକୁଟ କିପରି କରାଯିବ ?"

ରାଜା କଅଣ କହିବେ ଭାବୁଛନ୍ତି, ଏହି ସମୟରେ ଜଣେ ପ୍ରସିଦ୍ଧ କାରିଗର ରାଜସଭାରେ ପହଞ୍ଚି ଜଣାଇଲା, "ହଜୁର, ମୋତେ ଆଦେଶ କଲେ ମୁଁ ଆପଣଙ୍କ ସ୍ୱର୍ଣ୍ଣମୁକୁଟ ତିଆରି କରିଦେବି ।" ରାଜା ଟିକିଏ ନିଶ୍ଚିନ୍ତ ହୋଇ କହିଲେ, "ଭଲକଥା, ମୁକୁଟପାଇଁ ଯେତେ ସୁନା ଦରକାର, ମନ୍ତ୍ରୀ ରାଜଭଣ୍ଡାରରୁ ଓଜନ କରିଦେବେ; କିନ୍ତୁ ମନେରଖ, ମୁକୁଟଟି ବିଶୁଦ୍ଧ ସୁନାରେ ତିଆରି ହେବ । ସେଥିରେ ଟିକିଏ ସୁଦ୍ଧା ଖାଦ ମିଶିଥିବାର ଜଣାଗଲେ ତୁମକୁ ଚିରଦିନ ପାଇଁ କାରାଗାରରେ ବନ୍ଦୀ କରାଯିବ ।"

ସ୍ୱର୍ଣ୍ଣକାର କହିଲା, "ମୁଁ ସବୁ ବିଷୟ ଜାଣିଛି । ମୁକୁଟରେ ଟିକିଏ ମାତ୍ର ଖାଦ ଥିବାର ଜଣାପଡ଼ିଲେ ହଜୁରଙ୍କର ଯାହା ଇଚ୍ଛା ସେ ଦଣ୍ଡ ଦେବେ ।"

ରାଜାଙ୍କ ଆଦେଶରେ ମନ୍ତ୍ରୀ ଭଣ୍ଡାରରୁ ସୁନା ଓଜନ କରି ଆଣି ସ୍ୱର୍ଣ୍ଣକାରକୁ ଦେଲେ ।

ଅଠଦିନ ପରେ ସ୍ୱର୍ଣ୍ଣକାର ଆସି ପୁଣି ରାଜସଭାରେ ଉପସ୍ଥିତ । ତାହାର ହାତରେ ଅପୂର୍ବସୁନ୍ଦର ସ୍ୱର୍ଣ୍ଣ ମୁକୁଟଟିଏ । ସେ ମୁକୁଟଟିକୁ ରାଜସଭା ସମ୍ମୁଖେ ରଖିଦେଇ ହାତଯୋଡ଼ି ଛିଡ଼ା ହେଲା । ମୁକୁଟର ତେଜରେ ସଭାଘର ଚକ୍ ଚକ୍ ହୋଇ ଉଠିଲା । ସଭାସଦ୍‌ମାନଙ୍କର ଆଖି ଝଲସି ଗଲା । ରାଜା ମୁକୁଟର କାରିଗରୀ ଦେଖି ଏକବାରେ ମୁଗ୍ଧ । ସେ ଏଥି ପୂର୍ବରୁ ଏପରି ସୁନ୍ଦର ମୁକୁଟ କୌଣସିଠାରେ ଦେଖି ନ ଥିଲେ । ସଭାରେ ଥିବା ଲୋକେ ସମସ୍ତେ ଏକସ୍ୱରରେ ମତଦେଲେ ଯେ, ଏପରି ସୁନ୍ଦର କାରିଗରି କୌଣସିଠାରେ ଦେଖା ନାହିଁ । ରାଜା ସ୍ୱର୍ଣ୍ଣକାରକୁ ପ୍ରଶଂସା କରି ତାଙ୍କୁ ପୁରସ୍କାର ଦେବାକୁ ଚାହାଁଲେ ।

ହଠାତ୍ ରାଜାଙ୍କ ମନରେ ଟିକିଏ ସନ୍ଦେହ ହେଲା । ସେ ପାତ୍ର ମନ୍ତ୍ରୀ ଓ ପଣ୍ଡିତମାନଙ୍କୁ କହିଲେ, "ଆପଣମାନେ ଯେ ମୁକୁଟଟିର କାରିଗରୀର ପ୍ରଶଂସା କଲେ, ତା ଠିକ୍ । କିନ୍ତୁ ସେଥିରେ ଯେ ଖାଦ ମିଶିନାହିଁ ତା କିପରି ବୁଝିବା ? ମୁକୁଟଟି ବିଶୁଦ୍ଧ ସୁନାରେ ତିଆରି, ଏ କଥାର ପ୍ରମାଣ ନ ମିଳିବାଯାଏ ପୁରସ୍କାର ଦେବା ଠିକ୍ ହେବନାହିଁ । ଆପଣମାନେ ପରୀକ୍ଷା କରି ଦେଖନ୍ତୁ, ଏଇଟି ଖାଣ୍ଟି ସୁନାରେ ତିଆରି କି ନା ?

ଏବେ ସମସ୍ତଙ୍କ ମନରେ ଚିନ୍ତା ପଶିଲା । କେହି କିଛି ଉତ୍ତର ଦେବାକୁ ସାହାସ କଲେ ନାହିଁ । କିଛି ସମୟ ପରେ ଜଣେ କହିଲେ, "ହଜୁର; ମୁକୁଟଟିକୁ ନିଆଁରେ ପୋଡ଼ିଦେଲେ ଖାଣ୍ଟିସୁନା କି ମିଶା ସୁନା ଜଣା ପଡ଼ିବ ।"

ରାଜା କହିଲେ, "ତା କିପରି କରାଯାଇପାରେ ? ପୋଡ଼ି-ଦେଲେ ମୁକୁଟର କାରିଗରି ନଷ୍ଟ ହୋଇଯିବ ?"

ଏତେବଡ଼ ସଭାରେ କାହାରିକୁ କିଛି ବୁଦ୍ଧି ଦିଶିଲନାହିଁ । ମୁକୁଟକୁ ଭାଙ୍ଗି ପୋଡ଼ି ନଷ୍ଟ ନ କରି ଖାଣ୍ଟି ସୁନା କି ମିଶା ସୁନା କିପରି ଜଣାଯିବ ?

ସଭା ଭିତରେ ଜଣେ ବୃଦ୍ଧ ଲୋକ ଗୋଟିଏ କଣରେ ମୁହଁ ତଳକୁ କରି ବସି କ'ଣ ଚିନ୍ତା କରୁଥିଲେ । ରାଜା ତାଙ୍କୁ ଲକ୍ଷ୍ୟ-କରି ପଚାରିଲେ, "ବୃଦ୍ଧ ମହାଶୟ, ଆପଣଙ୍କ ପରି ଜ୍ଞାନୀ ଲୋକ ଅନ୍ୟ କେହି ନାହାନ୍ତି । ଆପଣହିଁ ଉପାୟ ବାହାର କରି ପାରିବେ ।"

ଧ୍ୟାନରୁ ଉଠିଲା ପରି ବୃଦ୍ଧ ରାଜାଙ୍କ ଆଡ଼କୁ ଚାହିଁରହିଲେ । କିଛି ସମୟ ପରେ ସେ କହିଲେ, "ମହାରାଜ, ଏ ପ୍ରଶ୍ନର ସମାଧାନ ପାଇଁ ମୋତେ କିଛିଦିନ ଚିନ୍ତା କରିବାକୁ ଦିଅନ୍ତୁ ।"

ରାଜା କହିଲେ, "ବେଶ୍, ମୁକୁଟ ରାଜପ୍ରସାଦରେ ରହିଲା । ଆପଣ କିଛିଦିନ ଚିନ୍ତାକରି ସେଇଟି ଖାଣ୍ଟି ସୁନାର କି ନୁହେଁ ତାହା ସ୍ଥିର କରନ୍ତୁ । ଯଦି ଖାଣ୍ଟି ସୁନାରେ ହୋଇଥିବାର ଜଣାପଡ଼େ ତେବେ କାରିଗରକୁ ଯଥେଷ୍ଟ ପୁରସ୍କାର ଦିଆଯିବ ।"

ରାଜାଙ୍କର ନିଷ୍ପତ୍ତି କାରିଗରକୁ ଜଣାଇ ଦିଆଯିବାରୁ ସେ ଛଡାପୁ ନେଲା ।

ସେହିଦିନଠାରୁ ବୃଦ୍ଧ ଚିନ୍ତା କରିବାରେ ଲାଗିଲେ । ଏପରି କି ରାତିରେ ତାଙ୍କୁ ନିଦ ହେଲାନାହିଁ । ସବୁବେଳେ ସେଇ ଏକ ଚିନ୍ତା—କେଉଁ ଉପାୟରେ ମୁକୁଟକୁ ନ ଭାଙ୍ଗି ତାହା ବିଶୁଦ୍ଧ ସୁନାରେ ତିଆରି କି ନା ଜଣାପଡ଼ିବ ।

ଏହାପରେ କିଛିଦିନ ବିତିଗଲା । ଦିନେ ବୃଦ୍ଧ ଗାଧୋଇବା ପାଇଁ ଗାଧୁଆ ଘରକୁ ଯାଇଥିଲେ । ତାଙ୍କ ସକାଶେ ଗୋଟିଏ କୁଣ୍ଡ ପାଣିରେ ପୂର୍ଣ୍ଣହୋଇ ରଖା ଯାଇଥିଲା । ସେ ଗାଧୋଇବାକୁ ସେଥିରେ ଗୋଡ଼ ପୂରାଇଲେ । ଫଳରେ କିଛି ପାଣି କୁଣ୍ଡ ମଙ୍ଗ ଡେଇଁ ବାହାରେ ପଡ଼ିଲା । କୁଣ୍ଡ ଭିତରେ ସମଗ୍ର ଦେହଟି ବୁଡ଼ାଇଲା ବେଳକୁ ଆହୁରି କିଛି ପାଣି ବାହାରି ଗଲା । ବୃଦ୍ଧ କୁଣ୍ଡରୁ ବାହାରି ଆସି ଦେଖିଲେ ଯେ ପାଣି ଅନେକ ପରିମାଣରେ କମିଯାଇଛି । ସେ ଭାବିଲେ, "କୁଣ୍ଡରୁ ଯେତିକି ଆୟତନର ପାଣି ବାହାରି ଆସିଛି, ମୋ ଦେହର ଆୟତନ ନିଶ୍ଚୟ ସେତିକି । ତେବେ ମୁକୁଟକୁ ନ ତରଳାଇ ତାର ଆୟତନ ଜାଣି ହେବ ନାହିଁ କାହିଁକି ? ମୁକୁଟର ଆୟତନ ଜଣାପଡ଼ିଲେ ତେଣିକି ତାହା ଖାଣ୍ଟି ସୁନା କି ମିଶା ସୁନା ସହଜରେ ଜଣା ପଡ଼ିଯିବ ।"

ସେ ଆନନ୍ଦରେ ଅଧୀର ହୋଇ ଉଠିଲେ । ଆଉ ଗାଧୋଇବେ କଅଣ ? ଯେଉଁ ଚିନ୍ତା ତାଙ୍କୁ ଦିନରାତି ଘାରିଥିଲା, ଆଜି ସେ ଚିନ୍ତା ଯାଇଛି । ସେ ସେହିପରି ଓଦାଲୁଗାରେ ରାଜସଭାକୁ ଧାଇଁଲେ । ତାଙ୍କ ତୁଣ୍ଡରୁ କେବଳ ବାହାରୁଥାଏ, "ଏବେ ପାଇଲି; ଏବେ ପାଇଲି ।" ବାଟରେ ଯେ ଦେଖୁଛି, ସେ ଭାବୁଛି, "ଏଡ଼େ ପଣ୍ଡିତ ଲୋକଟା ପାଗଳ ହୋଇଗଲା ନା କଅଣ ?"

ବୃଦ୍ଧ ସଭାରେ ପହଞ୍ଚି କହିଲେ—'ଏବେ ପାଇଲି' । ସଭାର ସମସ୍ତେ ଭାବୁଛନ୍ତି; ବୁଢ଼ା ପାଗଳ ହୋଇ ଯାଇଛି, ତା ନ ହେଲେ କି ଏଡ଼େ ବଡ଼ ରାଜସଭାକୁ ଏପରି ଓଦାଲୁଗାରେ ଧାଇଁଆନ୍ତା !"

କିନ୍ତୁ ରାଜା ବୃଦ୍ଧଙ୍କୁ ଭଲକରି ଜାଣନ୍ତି । ତାଙ୍କର ଅଗାଧ ଜ୍ଞାନ ବିଷୟରେ ରାଜାଙ୍କର ଆଦୌ ସନ୍ଦେହ ନ ଥିଲା । ତେଣୁ ସେ ଆଦର କରି ବୃଦ୍ଧଙ୍କୁ ଆସନରେ ବସାଇ କହିଲେ, "ତେବେ ଆପଣ ମୋ ପ୍ରଶ୍ନର ମୀମାଂସା ପାଇଁ ଉପାୟ ପାଇଛନ୍ତି ?"

ବୃଦ୍ଧ କହିଲେ, "ହଁ, ଆଜଯାଏ ଦିନରାତି ଭାବି ଭାବି କିଛି ଉପାୟ ପାଇ ନଥିଲି । ଆଜି ଗାଧୋଉ ଗାଧୋଉ ହଠାତ୍ ଉପାୟଟା ମିଳିଗଲା । ମୁକୁଟଟି କି ପ୍ରକାର ସୁନାରେ ତିଆରି ଏବେ ମୁଁ ତାହା ସ୍ଥିର କରିଦେବି ।"

ସଭାସଦ୍‌ମାନଙ୍କ ତୁଣ୍ଡରୁ ପଦେ କଥା ବାହାରୁ ନାହିଁ । ସମସ୍ତେ ବୃଦ୍ଧଙ୍କ ମୁହଁକୁ ଚାହିଁ ରହିଛନ୍ତି । ସେମାନଙ୍କ ଆଶ୍ଚର୍ଯ୍ୟର ସୀମା ନାହିଁ । କେହି ବୁଝି ପାରୁ ନାହାନ୍ତି, ଗାଧୋଇବା ସଙ୍ଗେ ସୁନା ମୁକୁଟର ସମ୍ବନ୍ଧ କଅଣ ?



ରାଜାଙ୍କ ମନ ଅସ୍ଥିର । ବୃଦ୍ଧଙ୍କ କହିବା ଅନୁସାରେ ଗୋଟିଏ କୁଣ୍ଡ ଅଣାଯାଇ ଗୋଟିଏ ବଡ଼ ଥାଳି ଉପରେ ରଖାଗଲା । କୁଣ୍ଡରେ ପାଣି ପୂର୍ଣ୍ଣ କରାଗଲା, ଯେପରି କି ଆଉ ଟୋପାଏ ସୁଦ୍ଧା ଅଧିକ ଧରିବ ନାହିଁ । ତା ପରେ ବୃଦ୍ଧ ମୁକୁଟଟି ଅଣାଇ କହିଲେ,

"ମହାରାଜ, ଦେଖନ୍ତୁ । ମୁଁ ଏହାକୁ ନେଇ ପାଣିକୁଣ୍ଡରେ ବୁଡ଼ାଇ ଦେବି । କୁଣ୍ଡରୁ ଯେଉଁ ପାଣି ବାହାରି ଥାଳୀରେ ପଡ଼ିବ, ସେ ପାଣିର ଆୟତନ ଯେତିକି, ମୁକୁଟରେ ଥିବା ସୁନାର ଆୟତନ ଠିକ୍ ସେତିକି ।"

ରାଜା ହଠାତ୍ କଥାଟା ବୁଝି ନପାରି କହିଲେ, "ବାହାରେ ପଡ଼ିବା ପାଣିର ଆୟତନ ସଙ୍ଗେ ମୁକୁଟରେ ଥିବା ସୁନାର ଆୟତନ ସମାନ ହେବ କାହିଁକି ?"

ବୃଦ୍ଧ ମୁକୁଟକୁ ନେଇ କୁଣ୍ଡପାଣିରେ ବୁଡ଼ାଇ ଦେଲେ । କିଛି ପାଣି କୁଣ୍ଡରୁ ବାହାରି ଆସି ଥାଳୀରେ ପଡ଼ିଗଲା ।

ତହୁଁ ବୃଦ୍ଧ କହିଲେ, "ମହାରାଜ; କୁଣ୍ଡରେ କେବଳ ପାଣି ଥିଲା । ମୁକୁଟକୁ ବୁଡ଼ାଇ ଦେବାରୁ କିଛି ପାଣି ବାହାରି ପଡ଼ିଲା ତ ?"

ରାଜା—ହଁ ।

ବୃଦ୍ଧ—ବର୍ତ୍ତମାନ ମୁକୁଟ ଯେଉଁ ସ୍ଥାନ ଅଧିକାର କରିଅଛି, ଆଗେ କିଏ ସେହି ସ୍ଥାନ ଅଧିକାର କରିଥିଲା ?

ରାଜା—କୁଣ୍ଡରୁ ବାହାରି ପଡ଼ିଥିବା ପାଣି ।

ବୃଦ୍ଧ—ମୁଁ ତ ତାହାହିଁ କହୁଛି । ତେବେ ଏକଥା ନିଃସନ୍ଦେହ-ରୂପେ ଜଣାଗଲା ଯେ ବାହାରି ପଡ଼ିଥିବା ପାଣିର ଆୟତନ ସଙ୍ଗେ ମୁକୁଟରେ ଥିବା ସୁନାର ଆୟତନ ସମାନ ।

ରାଜା—ହଁ । ସେ କଥା ମୁଁ ସ୍ୱୀକାର କରୁଛି । କିନ୍ତୁ ମୋ ପ୍ରଶ୍ନର ଉତ୍ତର ମିଳିଲା କାହିଁ ? ମୁଁ ଜାଣିବାକୁ ଚାହେଁ—ମୁକୁଟର ସୁନା ଖାଣ୍ଟି କି ସେଥିରେ କିଛି ମିଶିଛି ?

ବୃଦ୍ଧ—ଆପଣ ଧୈର୍ଯ୍ୟ ଧରନ୍ତୁ । ମୁକୁଟକୁ ନ ତରଳାଇ ତାର ଆୟତନ ଜାଣିବା ମୋର ଚିନ୍ତାର ବିଷୟ ଥିଲା । ସେ କଥା ଜାଣିଲା ପରେ ସୁନା ଖାଣ୍ଟି କି ନୁହଁ, ତା ସହଜରେ ଜଣାପଡ଼ିବ ।

ରାଜା—କିପରି ?

ବୃଦ୍ଧ—ମୁକୁଟର ସମାନ ଓଜନର ଖାଣ୍ଟି ସୁନା ଅଣାନ୍ତୁ । ତାକୁ ପୂର୍ଣ୍ଣ ଜଳ ପାତ୍ରରେ ବୁଡ଼ାଇଲେ ଯେତିକି ଆୟତନର ପାଣି ବାହାରି ପଡ଼ିବ, ତାହା ହେଉଛି ସେତିକି ସୁନାର ଆୟତନ । ଯଦି ଏହି ଆୟତନ ସଙ୍ଗେ ମୁକୁଟର ଆୟତନ ସମାନ ହୁଏ, ତେବେ ତାହା ବିଶୁଦ୍ଧ ସୁନାରେ ତିଆରି । କିନ୍ତୁ ସେଥିରେ ଯଦି ତମ୍ବା କି କଂସା ପ୍ରଭୃତି ଅନ୍ୟ କୌଣସି ଧାତୁ ମିଶିଥିବ, ତେବେ ମୁକୁଟର ଆୟତନ ବେଶୀ ହେବ । ଆପଣ ଜାଣନ୍ତି ଯେ ଏକତୋଳା ସୁନାର ଆୟତନ ଠାରୁ ଏକତୋଳା ରୁପା କିମ୍ବା ତମ୍ବାର ଆୟତନ ବେଶୀ ।

ରାଜା ଏବେ ସବୁକଥା ବୁଝିପାରି କହିଲେ, "ବାଃ, ଏତେ ସହଜ କଥା ! କିନ୍ତୁ ଏହା ତ କାହାରି ବୁଦ୍ଧିକୁ ଆସି ନ ଥିଲା ।"

ରାଜାଙ୍କ ଆଦେଶରେ ସେହିପରି ପରୀକ୍ଷା କରାଗଲା । ସଭାସଦ୍‌ମାନେ ବୃଦ୍ଧଙ୍କର ବୁଦ୍ଧି ଦେଖି ଅବାକ୍ । ଦେଖାଗଲା ଯେ ମୁକୁଟରେ ଥିବା ସୁନାର ଆୟତନ ତାହାର ଓଜନ ବିଶୁଦ୍ଧ ସୁନାର ଆୟତନ ଠାରୁ ଅଧିକ । ତେଣୁ ମୁକୁଟରେ ସୁନା ସହିତ ଆଉ କିଛି ମିଶିଥିବାର ପ୍ରମାଣ ହୋଇଗଲା ।

ରାଜାଙ୍କ ଆଦେଶରେ କାରିଗର ଧରା ହୋଇ ଆସିଲା । ସେ ଭାବିଥିଲା ଯେ ସୁନାରେ ଖାଦ ମିଶିଛି ବୋଲି କିଏ କିପରି ଧରିପାରିବ ? କିନ୍ତୁ ଏବେ ସତ କଥା ନ ମାନିବାର ଉପାୟ କାହିଁ ? ସେ ରାଜାଙ୍କ

ପାଦତଳେ ଲମ୍ବ ହୋଇ ପଡ଼ିଗଲା । କହିଲା, "ମହାରାଜ, ମୋର ଜୀବନ ରକ୍ଷା କରନ୍ତୁ । ମୁଁ ଲୋଭରେ ପଡ଼ି କିଛି ସୁନା ରଖିଦେଇ ସେତିକି ଓଜନର ତମ୍ବା ମିଶାଇ ଦେଇଥିଲି । ମୋର ଅପରାଧ କ୍ଷମା କରନ୍ତୁ ।"

ସେ ଦିନ ବୃଦ୍ଧଙ୍କ ମନରେ ଯେଉଁ ଅପୂର୍ବ ଆନନ୍ଦ, ତାହା କଥାରେ କହି ହେବ ନାହିଁ । ରାଜାଙ୍କ ମନରେ ମଧ୍ୟ ବଡ଼ ଆନନ୍ଦ ଯେ ତାଙ୍କ ସଭାରେ ଏପରି ଜ୍ଞାନୀ ଲୋକ ଅଛନ୍ତି । ତାଙ୍କ ମନରେ କେବଳ ଗୋଟିଏ ଦୁଃଖ ରହିଗଲା । ମୁକୁଟଟି ଏତେ ସୁନ୍ଦର ହେଲା; କିନ୍ତୁ ସେଇଟି ଖାଣ୍ଟି ସୁନାର ହୋଇ ପାରିଲା ନାହିଁ ।

ଏହି ବୃଦ୍ଧଙ୍କର ନାମ ହେଉଛି ଆର୍କିମିଡ଼ିସ୍ ।

---

## ବୁଦ୍ଧିର ବଳ

ଆର୍କିମିଡ଼ିସ୍ କିପରି ସିରାକ୍ୟୁଜର ରାଜାଙ୍କ ମୁକୁଟକୁ ନ ଭାଙ୍ଗି ସେଥିରେ ବିଶୁଦ୍ଧ ସୁନା ନଥିଲା ବୋଲି ବାହାର କରି ଦେଇଥିଲେ, ସେକଥା ଶୁଣିଛ । ଏବେ ସେହି ଆର୍କିମିଡ଼ିସ୍‌ଙ୍କର ଆଉ ଗୋଟିଏ ଅଦ୍ଭୁତ କାମ ବିଷୟ କୁହାଯାଉଅଛି ।

ସେ କାଳରେ ମଧ୍ୟ ଆଜିକାଲି ପରି ରାଜ୍ୟ ରାଜ୍ୟ ଭିତରେ ଯୁଦ୍ଧ ଲାଗୁଥିଲା । ଯେଉଁ ରାଜ୍ୟ ଯୁଦ୍ଧରେ ଜିଣୁଥିଲା, ସେ ବିଜିତ ରାଜ୍ୟର ଲୋକଙ୍କୁ ନିଜ ଶାସନରେ ରଖୁଥିଲା । ଲୋକେ ଯେ କେବଳ ହତିଆର ଧରି ଭୂମି ଉପରେ ଯୁଦ୍ଧ କରୁଥିଲେ, ତା ନୁହେଁ । ଯୁଦ୍ଧ ପାଇଁ ସେ କାଳରେ ବି ଜାହାଜ ବ୍ୟବହାର କରାଯାଉଥିଲା । ଯୋଦ୍ଧାମାନେ ଜାହାଜରେ ବସି ସମୁଦ୍ର ପାରହୋଇ ଶତ୍ରୁର ରାଜ୍ୟ

ଆକ୍ରମଣ କରୁଥିଲେ । କିନ୍ତୁ ଆଜିକାଲିର ଯୁଦ୍ଧଜାହାଜଠାରୁ ସେକାଳର ଯୁଦ୍ଧଜାହାଜଗୁଡ଼ିକ ଟିକିଏ ଭିନ୍ନ ରକମର ଥିଲା । ଆଧୁନିକ ଯୁଦ୍ଧଜାହାଜସବୁ ଲୁହା ଚଦରରେ ତିଆରି ଓ ସେସବୁ ବାଷ୍ପୀୟ କଳଦ୍ୱାରା ଚାଲେ । ସେ କାଳର ଜାହାଜଗୁଡ଼ିକ ମୋଟା କାଠ ପଟାରେ ତିଆରି ହେଉଥିଲା ଓ ସେଥିରେ ପାଲ ଟଣା ଯାଉଥିଲା । ପାଲରେ ପବନ ପଶି ଜାହାଜକୁ ସମୁଦ୍ର ଉପରେ ଚଳାଉଥିଲା । ସବୁ ରାଜ୍ୟର ଯୁଦ୍ଧଜାହାଜ ନଥିଲା । ତେଣୁ ଯେଉଁ ଦୁର୍ବଳ ରାଜ୍ୟମାନଙ୍କର ଯୁଦ୍ଧଜାହାଜ ନଥିଲା, ସେମାନେ ସବୁବେଳେ ଶତ୍ରୁର ଆକ୍ରମଣକୁ ଭୟ କରି ରହୁଥିଲେ ।

ରୋମ୍ ଗୋଟିଏ ଶ୍ରେଷ୍ଠ ରାଜ୍ୟ । ଏହି ରାଜ୍ୟର ଲୋକଙ୍କୁ ରୋମାନ୍ କୁହାଯାଉଥିଲା । ସେକାଳର ରୋମାନ୍‌ମାନେ ପୃଥିବୀ ଭିତରେ ଗୋଟିଏ ପ୍ରବଳ ଜାତି ବୋଲି ବିଖ୍ୟାତ ହୋଇଥିଲେ । ରୋମାନ୍ ବୀରମାନଙ୍କୁ ଡର କେବଳ ତାଙ୍କ ଆଖପାଖ ରାଜ୍ୟର ଲୋକେ କରୁଥିଲେ ନ ଥିଲେ, ଦୂରଦେଶ ଲୋକେ ମଧ୍ୟ ରୋମାନ୍‌ମାନଙ୍କ ଆକ୍ରମଣକୁ ଭୟ କରୁଥିଲେ । ରୋମାନ୍ ବୀରମାନେ ଅସ୍ତ୍ରଶସ୍ତ୍ର ଘେନି ଶତ୍ରୁମାନଙ୍କୁ ଆକ୍ରମଣ କରୁଥିଲେ । ତାହାଛଡ଼ା ସେମାନଙ୍କର ଅନେକଗୁଡ଼ିଏ ଯୁଦ୍ଧଜାହାଜ ଥିଲା । ସେଥିରେ ରୋମାନ୍ ସୈନ୍ୟମାନେ ସମୁଦ୍ର ପାରହୋଇ ଦୂରଦେଶ ସବୁ ଜୟ କରୁଥିଲେ ।

ସିରାକ୍ୟୁଜ୍ ଉପରେ ସେମାନଙ୍କର ଦୃଷ୍ଟି ପଡ଼ିଲା । ସେମାନେ ତାହାକୁ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଲେ । ରୋମ୍ ଓ ସିରାକ୍ୟୁଜ୍ ମଧ୍ୟରେ ଯୁଦ୍ଧ ଘୋଷଣା ହେଲା ।

ରୋମ୍ ତୁଳନାରେ ସିରାକ୍ୟୁଜ୍ ଅତି ଛୋଟ ରାଜ୍ୟ । ତାର ସୈନ୍ୟ ସଂଖ୍ୟା ଅଳ୍ପ । ପୁଣି ରୋମାନ୍‌ମାନଙ୍କ ପରି ସେମାନେ ପରାକ୍ରମୀ ବୀର ନଥିଲେ । ତା' ଛଡ଼ା ରୋମାନ୍‌ମାନଙ୍କ ଭଳି

ସେମାନଙ୍କର ଯଥେଷ୍ଟ ଯୁଦ୍ଧଜାହାଜ ନଥିଲା । ରୋମାନ୍‌ମାନେ ଅକ୍ରମଣ କରିବାକୁ ଆସୁଛନ୍ତି, ଏ ସମ୍ବାଦ ଶୁଣି ସିରାକ୍ୟୁଜର ଲୋକେ ଭୟରେ ଥରି ଉଠିଲେ ।

ରୋମାନ୍‌ମାନେ ବ୍ୟବସ୍ଥା କରିଥାଆନ୍ତି ଯେ, ସେମାନେ ବହୁସଂଖ୍ୟକ ସୈନ୍ୟ ଜାହାଜରେ ଆଣି ହଠାତ୍ ସିରାକ୍ୟୁଜରେ ପ୍ରବେଶ କରିବେ । ସିରାକ୍ୟୁଜର ସାମାନ୍ୟ ସୈନ୍ୟଦଳ ସେମାନଙ୍କୁ ରୋକି ପାରିବେ ବୋଲି କେହି ଆଶା କରି ନଥିଲେ ।

ଭୟରେ ଚଞ୍ଚଳ ହୋଇ ସିରାକ୍ୟୁଜର ମୁଖିଆ ଲୋକମାନେ ମିଳି ଗୋଟିଏ ସଭା କଲେ । ବିଚାର ପଡ଼ିଲା, କିପରି ରୋମାନ୍‌-ମାନଙ୍କ ହାତରୁ ରକ୍ଷା ମିଳିବ । କିନ୍ତୁ କେହି କିଛି ଉପାୟ ବାହାର କରି ପାରିଲେ ନାହିଁ । ଶେଷରେ ସମସ୍ତେ ମିଳି ବୃଦ୍ଧ ଆର୍କିମିଡ଼ିସ୍‌ଙ୍କ ପାଖକୁ ଗଲେ । ସମସ୍ତଙ୍କ ମୁହଁରେ ଏକ କଥା—ରୋମାନ୍ ସୈନ୍ୟମାନେ ଜାହାଜରେ ବସି ଆସୁଛନ୍ତି । ଆମ ରାଜ୍ୟ ଗଲା ! କିପରି ରକ୍ଷା ପାଇବ ?

ଆର୍କିମିଡ଼ିସ୍ ଲୋକମାନଙ୍କୁ ପଚାରି, ରୋମାନ୍‌ମାନେ କେତେବେଳେ କେଉଁ ଆଡ଼ୁ ଜାହାଜରେ ଆସିବାର ସମ୍ଭବ ସେ କଥା ବୁଝି ନେଲେ । ସବୁ ବୁଝିସାରି ଟିକିଏ ଚିନ୍ତାକରି କହିଲେ, "ଆଚ୍ଛା, ମୁଁ ଏବେ ଏକାକୀ ରାଜ୍ୟରକ୍ଷାର ଭାର ନେଲି । ଆପଣମାନେ ମୋତେ କେବଳ ଗୁଡ଼ିଏ ବଡ଼ ବଡ଼ ଚୁଲିମଧ୍ୟ କାଚ ସଂଗ୍ରହ କରି ଦିଅନ୍ତୁ ।"

ଲୋକେ କିଛି ବୁଝିପାରିଲେ ନାହିଁ । ଶତ୍ରୁମାନେ ଜାହାଜରେ ବସି ଯୁଦ୍ଧ କରିବାକୁ ଆସୁଛନ୍ତି । କପଟରେ ଶତ୍ରୁମାନଙ୍କୁ ମାରିବାକୁ ହେବ, ତାର କିଛି ଉପାୟ ନକରି ବୃଦ୍ଧ ଆର୍କିମିଡ଼ିସ୍ ଗୁଡ଼ିଏ କାଚ ଯେବେ କଅଣ କରିବେ ?

କିନ୍ତୁ ବୃଦ୍ଧ ହେଲେହେଁ ଆର୍କିମିଡ଼ସ୍ ସାମାନ୍ୟ ଲୋକ ନୁହନ୍ତି । ତାଙ୍କ ବୁଦ୍ଧି ନିକଟରେ କେତେ କେତେ ଲୋକ ହାରିଯିବେ । ତେଣୁ ସେମାନେ ଆଉ କିଛି ନ ପଚାରି ଗୁଡ଼ାଏ କାଚ ସଂଗ୍ରହ କରି ତାଙ୍କୁ ଦେଲେ ।

ସୂର୍ଯ୍ୟଙ୍କ ଆଡ଼କୁ ଦେଖାଇ ସ୍ବଚ୍ଛ କାଚ ଖଣ୍ଡିଏ ଧରିଲେ ସୂର୍ଯ୍ୟଙ୍କ ଆଲୋକ ସେଥିରେ ପ୍ରତିଫଳିତ ହୋଇ ଅନ୍ୟସ୍ଥାନରେ ପଡ଼େ । ପିଲାମାନେ ବେଳେବେଳେ ଏପରି କରି କାଚରେ ଖେଳନ୍ତି । ଆର୍କିମିଡ଼ସ୍ ଭାବିଲେ ଯେ, କେତେଗୁଡ଼ାଏ କାଚ ଉପରେ ସୂର୍ଯ୍ୟର କିରଣକୁ ପ୍ରତିଫଳିତ କରାଇ ଯଦି ଗୋଟିଏ ସ୍ଥାନରେ ପକାଯାଇପାରେ ତେବେ ସେ ଆଲୋକର ତେଜ ଭୀଷଣ ହେବ । ଏହି ଆଲୋକ ଯାହା ଉପରେ ପଡ଼ିବ, ତାହା ନିଶ୍ଚୟ ପୋଡ଼ିଯିବ ।

ଆର୍କିମିଡ଼ସ୍ କାଚଗୁଡ଼ିକୁ ନେଇ ସମୁଦ୍ର କୂଳରେ ଏପରି ଭାବରେ ସଜାଇ ରଖିଲେ ଯେ ସୂର୍ଯ୍ୟକିରଣ ସବୁ କାଚ ଉପରେ ପଡ଼ି ଗୋଟିଏ ସ୍ଥାନରେ ପ୍ରତିଫଳିତ ହେଲା ।

ସିରାକ୍ୟୁଜ ସହରଟି ସମୁଦ୍ରର ନିକଟରେ । ସହରର ଚାରି ପାଖେ ପ୍ରାଚୀର । ସମୁଦ୍ର କୂଳ ନିକଟରେ ଆର୍କିମିଡ଼ସ୍ ଏହି କାଚର ଯନ୍ତ୍ରଟିକୁ ସଜାଇ ଦେଇ ସମୁଦ୍ର ଆଡ଼କୁ ଚାହିଁ ରହିଲେ ।

ସୂର୍ଯ୍ୟ ପ୍ରଖର ଭାବରେ କିରଣ ଦେଉଥାନ୍ତି । କିରଣ ସମୁଦ୍ର ଉପରେ ପଡ଼ି ଲହରୀଗୁଡ଼ିକ ଚକ୍ ଚକ୍ ଦେଖାଯାଉଥାଏ । କିଛି ସମୟ ପରେ ରୋମାନ୍‌ମାନଙ୍କ ଯୁଦ୍ଧ ଜାହାଜଗୁଡ଼ିକ ସମୁଦ୍ରରେ ଦେଖାଗଲା । ଶ୍ରେଣୀବଦ୍ଧ ହୋଇ ଜାହାଜଗୁଡ଼ିକ ସମୁଦ୍ରର ଲହରୀ ଉପରେ ଦୋଳି ଦୋଳି ଚାଲୁଥାନ୍ତି । ପବନରେ ପାଲସବୁ ଫୁଲି ଉଠିଥାଏ । ଜାହାଜମାନଙ୍କରେ ଥିବା ସୈନ୍ୟମାନେ ଆନନ୍ଦରେ ରଣବାଦ୍ୟ ବଜାଇ ଗୀତ ଗାଉଥାନ୍ତି । ସେମାନଙ୍କ ବାଦ୍ୟ ଓ

ଟାଙ୍ଗର ଧ୍ୱନି ପବନରେ ଭାସି ଆସି ଅସ୍ପଷ୍ଟ ଭାବରେ ସିରାକ୍ୟୁଜର ଲୋକଙ୍କୁ ଶୁଣା ଯାଉଥାଏ । ରୋମାନମାନଙ୍କ ମନ ଆନନ୍ଦରେ ପୂରି ଯାଇଥାଏ । ସିରାକ୍ୟୁଜର ସାମାନ୍ୟ ସୈନ୍ୟଙ୍କୁ ଶେଷକରି ସହର ଦଖଲ କରିବା ପାଇଁ ସେମାନଙ୍କୁ କେତେ ସମୟ ଅବା ଲାଗିବ ।

ଆର୍କିମିଡ଼ସ୍ ଜାହାଜଗୁଡ଼ିକୁ ଲକ୍ଷ୍ୟ କରୁଥିଲେ । ଯେଉଁ ସ୍ଥାନରେ ପ୍ରତିଫଳିତ ସୂର୍ଯ୍ୟ ରଶ୍ମି ପଡ଼ିବା ପାଇଁ ସେ କଳନା କରିଥିଲେ, ସେହିଠାରେ ଜାହାଜଗୁଡ଼ିକ ପହଞ୍ଚିଗଲା । ଆର୍କିମିଡ଼ସ ହଠାତ୍ କାଚଗୁଡ଼ିକ ହିସାବ ଅନୁସାରେ ଘୁରାଇ ଦେଲେ । ସୂର୍ଯ୍ୟ କିରଣ କାଚଗୁଡ଼ିକ ଉପରେ ପ୍ରତିଫଳିତ ହୋଇ ଜାହାଜମାନଙ୍କ ଉପରେ ପଡ଼ିଲା । ମୁହୂର୍ତ୍ତିକ ମଧ୍ୟରେ ଜାହାଜ ଭିତରେ ନିଆଁ ଲାଗିଗଲା । ସେଥିରେ ଥିବା ସୈନ୍ୟମାନେ ଚମକି ପଡ଼ିଲେ । ଜାହାଜରେ ନିଆଁ ଲାଗିଲା କୁଆଡ଼ୁ ?



ରୋମାନ୍ ସୈନ୍ୟମାନଙ୍କର ଆନନ୍ଦ କେଉଁଆଡ଼େ ଉଭେଇ ଗଲା । କିପରି ପ୍ରାଣରକ୍ଷା କରିବେ ଉପାୟ ବାହାରିଲା ନାହିଁ । ଅନେକେ

ଜଳନ୍ତା ଜାହାଜ ଭିତରେ ପୋଡ଼ିହୋଇ ମଲେ । କେତେ ପ୍ରାଣ ରକ୍ଷା କରିବାକୁ ସମୁଦ୍ରକୁ ଡେଇଁପଡ଼ି ମରିଲେ, ଶିଶୁମାର ପ୍ରଭୃତିଙ୍କର ପେଟରେ ପଡ଼ିଲେ । ସିରାକ୍ୟୁଜ ଜଣିବାର ସ୍ୱପ୍ନ ଘଡ଼ିକ ମଧ୍ୟରେ ଭାଙ୍ଗିଗଲା ।

ଏଣେ ସିରାକ୍ୟୁଜର ଲୋକେ ପ୍ରାଚୀର ତଳେ ଛିଡ଼ାହୋଇ ଆର୍କିମିଡ଼ସ୍‌ଙ୍କର ଅଦ୍ଭୁତ କାର୍ଯ୍ୟ ଦେଖୁଥିଲେ । ଶତ୍ରୁ ଜାହାଜ ଧ୍ୱଂସ ପାଇବାର ଦେଖି ସେମାନେ ଆନନ୍ଦରେ ନାଚିବାକୁ ଲାଗିଲେ । ସମସ୍ତଙ୍କ ମୁହଁରେ ଆର୍କିମିଡ଼ସ୍‌ଙ୍କର ପ୍ରଶଂସା ।

ହଜାର ହଜାର ସୈନ୍ୟ ଯାହା କରିପାରି ନ ଥାନ୍ତେ, ଏକା ଆର୍କିମିଡ଼ସ୍ ବୁଦ୍ଧି ବଳରେ ତାହା କରି ପାରିଲେ । ବୁଦ୍ଧିର ବଳ ନିକଟରେ ଦେହର ବଳ କ ଛାର ?

---

## ଆବିଷ୍କାର ପାଇଁ ଜୀବନ ପଣ

ଆଜକାଲ କୌଣସି ଡାକ୍ତରଖାନାକୁ ଗଲେ ଦେଖାଯିବ ଯେ ପ୍ରତ୍ୟହ ଅନେକ ରୋଗୀଙ୍କ ଦେହରେ ଅସ୍ତ୍ରୋପଚାର କରାଯାଉଅଛି । ଅଳ୍ପ କେତେଦିନ ମଧ୍ୟରେ ସେମାନେ ସୁସ୍ଥ ହୋଇ ଯାଉଅଛନ୍ତି । କୌଣସି କୌଣସି ଲୋକର ଜୀବନ ରକ୍ଷାକରିବା ପାଇଁ କେବେ-କେବେ ଡାକ୍ତର ତାର ହାତ ଗୋଡ଼ ବା ଅନ୍ୟ କୌଣସି ଅଙ୍ଗ କାଟି ଫିଙ୍ଗି ଦେଉଛନ୍ତି । କାହାରି ପେଟର ଅନ୍ତରେ ଘାଆ ହେଲେ ଡାକ୍ତର ପେଟ ଚିରି ଅନ୍ତର ଘାଆ ହୋଇଥିବା ଅଂଶଟି କାଟି ବାହାର କରି ଦେଉଛନ୍ତି ଓ ରୋଗୀ ଆରୋଗ୍ୟ ଲାଭ କରୁଅଛି । ଏବେ ଅସ୍ତ୍ରୋପଚାର ଏତେ ସାଧାରଣ ଯେ ଏହା

ଆମ୍ଭମାନଙ୍କର ଅସୁସ୍ଥ ଉତ୍ପାଦନ କରେ ନାହିଁ । କିନ୍ତୁ ପ୍ରାୟ ଦେଢ଼ଶବର୍ଷ ତଳର କଥା ଭାବିଲେ ଆତଙ୍କରେ ଶରୀରରେ ରୋମାଞ୍ଚ ଜାତ ହେବ ।

ସେତେବେଳେ ଡାକ୍ତରମାନଙ୍କର ଅସ୍ତ୍ରୋପଚାର କରିବାରେ ଏତେ ସୁବିଧା ନ ଥିଲା । ଅସ୍ତ୍ରଚିକିତ୍ସାର ନାମ ଶୁଣିଲେ ରୋଗୀର ହୃତ୍କମ୍ପ ଜାତ ହେଉଥିଲା । ଯଦି କାହାର ବଥ ହେଉଥିଲା, ଗଛରୁ ପଡ଼ିଯାଇ ଯଦି କାହାର ଗୋଟାଏ ଗୋଡ଼ର ହାଡ଼ ଏକବାର ଗୁଣ୍ଡ ହୋଇ ଯାଉଥିଲା, ଅସ୍ତ୍ରଚିକିତ୍ସା ଆବଶ୍ୟକ ପଡୁଥିଲା । ସେ କାଳରେ ଏ ପ୍ରକାର ରୋଗୀ ବରଂ ମରଣକୁ ଶ୍ରେୟସ୍କର ମନେ କରୁଥିଲା, କିନ୍ତୁ ଡାକ୍ତରଦ୍ୱାରା ଅସ୍ତ୍ରଚିକିତ୍ସା କରାଇବାକୁ ଇଚ୍ଛା କରୁ ନ ଥିଲା । ଏହାର



କାରଣ ହେଉଛି—ଅସ୍ତ୍ର-ଉପଚାର ହେଲାବେଳେ ରୋଗୀକୁ ମରଣଠାରୁ ବଳି କଷ୍ଟ ଭୋଗିବାକୁ ପଡ଼ୁଥିଲା । ଏପରି କି ଅସ୍ତ୍ରୋପଚାରର

କଷ୍ଟ ସହ୍ୟ କରି ନ ପାରି ଅନେକ ରୋଗୀ ପ୍ରାଣ ହରାଉଥିଲେ । ସେ କାଳରେ ଅସ୍ତ୍ରୋପଚାର କରାଇବାକୁ ହେଲେ ଆଗେ ଜୀବନର ଆଶା ଛାଡ଼ିଦେବାକୁ ପଡ଼ୁଥିଲା ।

ଆଜିକାଲି କାହାରିଠାରେ ଅସ୍ତ୍ରୋପଚାର କରିବା ପୂର୍ବରୁ ଏକପ୍ରକାର ଔଷଧଦ୍ୱାରା ତାହାର ଚେତନା ହରାଇ ଦିଆଯାଏ । ତେଣୁ ଡାକ୍ତର ତା'ର ଦେହର କୌଣସି ଅଂଶ କାଟିଲାବେଳେ ସେ କିଛିମାତ୍ର କଷ୍ଟ ଅନୁଭବ କରିପାରେ ନାହିଁ । ଏପରିକି ରୋଗୀର ଗୋଟାଏ ହାତ କିମ୍ବା ଗୋଡ଼ କାଟି ଫିଙ୍ଗି ଦେଲେ ମଧ୍ୟ ସେତେବେଳେ ସେ କଷ୍ଟ ପାଏ ନାହିଁ କିମ୍ବା କିଛି ଜାଣିପାରେ ନାହିଁ । ମାତ୍ର ଆଗ କାଳରେ ମନୁଷ୍ୟର ଚେତନା ଲୋପ କରିଦେବା ପାଇଁ କୌଣସି ଔଷଧ ଜଣା ନ ଥିଲା । ତେଣୁ ଅସ୍ତ୍ରୋପଚାର ବେଳେ ରୋଗୀର ଚେତନା ଥିବାରୁ ସେ ବଡ଼ କଷ୍ଟ ପାଉଥିଲା । ତାକୁ କେତେଜଣ ବଳିଷ୍ଠ ଲୋକ ମାଡ଼ି ବସନ୍ତି ଯେପରି କି ସେ ଟିକିଏ ହେଲେ ଇତସ୍ତତଃ ହୋଇ ନ ପାରେ । ଡାକ୍ତର ତା ଦେହରେ ଛୁରୀ ଚଳାଇଲା ବେଳେ ସେ ଚିତ୍କାର କରି ଆକାଶ ଫଟାଇ ଦେଉଥାଏ । ଉଃ, ସେ କି କରୁଣ ଦୃଶ୍ୟ ହୋଇ ନ ଥିବ !

ଆମ ଦେହରେ ସାମାନ୍ୟ ଗୋଟାଏ କଣ୍ଟା ଗଳିଗଲେ ବା ଛୁରୀରେ ଅଙ୍ଗୁଠି ଟିକିଏ କଟିଗଲେ କି କଷ୍ଟ ନ ହୁଏ ! ଜୀବନ୍ତ ମନୁଷ୍ୟ ଶରୀରରେ ଛୁରୀ ଚଳାଇଲାବେଳେ ତାକୁ କି କଷ୍ଟ ହେଉ ନ ଥିବ ? ମାତ୍ର ରୋଗୀର ଦୁଃଖ କଷ୍ଟ ମଧ୍ୟରେ ଡାକ୍ତରମାନଙ୍କୁ ଅସ୍ତ୍ରୋପଚାର କରିବାକୁ ହେଉଥିଲା । ରୋଗୀର ଚିତ୍କାର, ରୋଦନ ବିକଳ ଗୁହାରି ସବୁ ଦେଖିଶୁଣି ମଧ୍ୟ ତାର ଦୁଃଖ ଦୂର କରିବାକୁ ଡାକ୍ତରଙ୍କର କିଛି ଉପାୟ ନ ଥିଲା । ଅସ୍ତ୍ରୋପଚାର ବେଳେ ରୋଗୀ

ନପରେ ଏ ସବୁ କଷ୍ଟରୁ ରକ୍ଷାପାଇବ, ତାହା ଡାକ୍ତରମାନଙ୍କର ପ୍ରଧାନ ଚିନ୍ତା ହେଲା ।

ହେନେରୀ ହିଲ୍ ହିକ୍‌ମାନ୍ ବୋଲି ଜଣେ ଅଭିଜ୍ଞ ଡାକ୍ତର ଥିଲେ । ଅସ୍ତ୍ର ଚିକିତ୍ସା ତାଙ୍କୁ ଉତ୍ତମରୂପେ ଜଣା ଥିଲା । ଦିନେ ଗୋଟିଏ ଛୋଟ ବାଳକର ଦେହରେ ଅସ୍ତ୍ରୋପଚାର କରିବାର ଦରକାର ପଡ଼ିଲା । କେତେଜଣ ବଳବାନ୍ ଲୋକ ପିଲାଟିକୁ ମାଡ଼ି ଧରିଥାନ୍ତି ଓ ହିକ୍‌ମାନ୍ ତା ଦେହରେ ଅସ୍ତ୍ର ଚଳାଉଥାନ୍ତି । ଏଣେ ପିଲାଟି ବିକଳ ପାଟିରେ ଡାକୁଥାଏ, "ତମ ପାଦତଳେ ପଡ଼ୁଛି ଡାକ୍ତରବାବୁ ! ମୋତେ ଛାଡ଼ିଦିଅ । ମରିଗଲି, ମୋତେ ଛାଡ଼ିଦିଅ ।"



ସେ ବେଦନାରେ ଯେଉଁଭଳି ଚିତ୍କାର କରି ଛଟପଟ ହେଉଥାଏ, ଲୋକେ ତାକୁ ସେତିକି ଅଧିକ ବଳପ୍ରୟୋଗ କରି ମାଡ଼ି ଧରୁଥାନ୍ତି । ଏପରି କିଛି ସମୟ ଚିତ୍କାର କରିବା ପରେ ତାର ସ୍ୱର କ୍ଷୀଣ ହୋଇ ଆସିଲା । ଏଣେ ତା ଦେହରେ ଅସ୍ତ୍ରୋପଚାର ଚାଲିଥାଏ ।

ଆଉ କିଛି ସମୟ ପରେ ତାର ସ୍ୱର ଏକବାରେ ବନ୍ଦ ହୋଇଗଲା । ଦେଖାଗଲା ଯେ ବାଳକାଟିର ଚକ୍ଷୁ ଚିରକାଳ ପାଇଁ ମୁଦ୍ରିତ ହୋଇ ଯାଇଛି ।

ସେହିଦିନଠାରୁ ଡାକ୍ତର ୱେଲ୍‌ସଙ୍କର ମନରେ ଆଉ ଶାନ୍ତି ରହିଲା ନାହିଁ । 'ଡାକ୍ତରବାବୁ, ମୋତେ ଛାଡ଼ିଦିଅ । ମୁଁ ମରିଗଲି' ପିଲାଟିର ଏଇ କରୁଣ ଚିତ୍କାର ତାଙ୍କ କାନରେ ଦିନରାତି ବାଜିଲା । ସେ ଆଉ ଅସ୍ତ୍ରୋପଚାର କଲେ ନାହିଁ । କିପରି, କିପରି, କିପରି ଚିନ୍ତା ଦେଇ ସ୍ଥିର କଲେ—ଏହାର ପ୍ରତିକାରଣ କଣ ? ଯନ୍ତ୍ରଣା ମଣିଷକୁ କି ଉପାୟରେ ଏପରି ଅଚେତନ କରିଦେବ, ଯେପରି କି ସେ କିଛି କଷ୍ଟ ଜାଣି ପାରିବ ନାହିଁ ।

ଦିବାରାତ୍ର ଏହାହିଁ ତାଙ୍କର ଏକମାତ୍ର ଚିନ୍ତାର ବିଷୟ ହେଲା । ସେତେବେଳକୁ ନାଇଟ୍ରସ୍ ଅକ୍‌ସାଇଡ୍ ବା ଲାଫିଙ୍ଗ୍ ଗ୍ୟାସ୍ ବୋଲି ଏକ ପ୍ରକାର ଗ୍ୟାସ୍ ବାହାରିଥାଏ । ଏହାକୁ ଆଘ୍ରାଣ କଲେ କିଛି ସମୟପାଇଁ ମନୁଷ୍ୟର ଚେତାଶକ୍ତି ଲୋପ ହୋଇଯାଏ । ୱେଲ୍‌ସ ମନେ କଲେ—ଅସ୍ତ୍ରୋପଚାର ବେଳେ ରୋଗୀକୁ ଅଚେତନ ରଖିବାପାଇଁ ବିଧାତା ଏହାକୁ ଦେଇଅଛନ୍ତି । କେତେକ ଦନ୍ତଚିକିତ୍ସକ ଦାନ୍ତ ଉପାଡ଼ିବାବେଳେ ଏହାକୁ ବ୍ୟବହାର କରି ଦେଖିଲେ ଯେ ରୋଗୀ କଷ୍ଟ ଅନୁଭବ କରୁନାହିଁ । ଯାହାହେଉ ୱେଲ୍‌ସଙ୍କର ଆଶା ଅନେକ ପରିମାଣରେ ସଫଳ ହେଲା ।

କିନ୍ତୁ ଏଡିନ୍‌ବରାର ସାର୍ ଜେମସ୍ ଇୟଙ୍ଗ୍ ସିମ୍‌ସନ୍ ବୋଲି ଜଣେ ଡାକ୍ତର ଦେଖିଲେ ଯେ ଲାଫିଙ୍ଗ୍ ଗ୍ୟାସ୍‌ଦ୍ୱାରା ଦାନ୍ତ ଉପାଡ଼ିବା ଭଳି ଛୋଟ ଛୋଟ ଅସ୍ତ୍ରୋପଚାର କରାଯାଇପାରେ । ମାତ୍ର ବଡ଼ ବଡ଼ ଅସ୍ତ୍ରୋପଚାର ପାଇଁ ରୋଗୀକୁ ଗାଢ଼ଭାବରେ ଅଚେତନ କରିବା ଦରକାର । ସେପରି କି ଔଷଧ ଅଛି ?

୧୮୩୧ ଖ୍ରୀଷ୍ଟାବ୍ଦରେ କ୍ଲୋରୋଫର୍ମ ଗୋଟିଏ ନୂଆ ତରଳ ପଦାର୍ଥ ଆବିଷ୍କାର କରାଗଲା । ମାତ୍ର ଏହାର ଗୁଣ ପୂର୍ଣ୍ଣ ଭାବରେ ଜଣାଯାଇ ନ ଥାଏ । କେତୋଟି ପଶୁପକ୍ଷୀଙ୍କ ଉପରେ ଏହାକୁ ପରୀକ୍ଷା କରାହେଲା ସତ, କିନ୍ତୁ ମନୁଷ୍ୟ ଉପରେ ତାର ଫଳ କଣ ହେବ, ପରୀକ୍ଷା କରିବାକୁ କାହାରି ସାହସ ହେଲା ନାହିଁ । ପରୀକ୍ଷା କରୁ କରୁ ଯଦି ଜଣେ ମନୁଷ୍ୟର ପ୍ରାଣ ଯାଏ ତେବେ କଅଣ ହେବ ?

ଡୁମା ନାମକ ଫ୍ରାନ୍ସର ଜଣେ ଡାକ୍ତର କେତେକ ପରୀକ୍ଷା କରି କହିଲେ—ବୋଧହୁଏ ଏହି କ୍ଲୋରୋଫର୍ମଦ୍ୱାରା ରୋଗୀକୁ ଏପରି ଅଚେତନ କରିହେବ ଯେ ସେ କୌଣସି ଯନ୍ତ୍ରଣା ଆଦୌ ଜାଣିପାରିବ ନାହିଁ ।

ସିମ୍ପସନ୍ ଦେଖିଲେ ଯେ ମନୁଷ୍ୟଠାରେ ପ୍ରୟୋଗ କରା ନଗଲେ ଯାଏ କ୍ଲୋରୋଫର୍ମର ପ୍ରକୃତ ଗୁଣ ଜଣାଯିବ ନାହିଁ । କିନ୍ତୁ ଅନ୍ୟ ମନୁଷ୍ୟ ଉପରେ ପ୍ରୟୋଗ କରି ତାର ଜୀବନକୁ ବିପଦରେ ପକାଇବା ଘୋର ଅନ୍ୟାୟ । ତେଣୁ ସେ ତାଙ୍କର ଦୁଇଜଣ ଡାକ୍ତର ବନ୍ଧୁଙ୍କୁ କହିଲେ, "ଦେଖ, ଆମ୍ଭେମାନେ ଡାକ୍ତର । ପରର ମଙ୍ଗଳ କରିବା ଆମର କାମ । କ୍ଲୋରୋଫର୍ମର ଗୁଣ ପରୀକ୍ଷା କରିବା ଦରକାର । ସେ ପରୀକ୍ଷା ଆମ ନିଜ ଉପରେ କରାଯାଉ । ସେଥିରେ ଯଦି ମୃତ୍ୟୁ ଘଟେ, ତେବେ ଦୁଃଖ ନାହିଁ । ଅନ୍ୟ ଲୋକ ଉପରେ ପରୀକ୍ଷା କରୁ କରୁ ଯଦି ତାର ପ୍ରାଣ ଯାଏ, ତେବେ ସେ ପାପ ଆମକୁ ବହନ କରିବାକୁ ହେବ । ତା ଛଡ଼ା ସରକାରଙ୍କ ପୋଲିସ୍ ଭୟ ମଧ୍ୟ ଅଛି । ମୁଁ ସ୍ଥିର କରିଛି ଯେ ମୋ ଉପରେ କ୍ଲୋରୋଫର୍ମର ପରୀକ୍ଷା କରିବି । ତୁମ୍ଭର ଆପତ୍ତି ନ ଥିଲେ ଏକ ସଙ୍ଗରେ ପରୀକ୍ଷା କରିବା ।"

ଅନେକ ବର୍ଷର ପରେ ତେଣିଁ ଯାକ ଏକ ସମୟରେ କ୍ଲୋରୋଫର୍ମ ଆଘ୍ରାଣ କରି ତାର ଫଳାଫଳ ଜାଣିବାକୁ ସ୍ଥିର କଲେ ।

ଧନେ ଘୋର ରାତ୍ରରେ ସିମ୍ପସନ୍ ଓ ତାଙ୍କର ଦୁଇବନ୍ଧୁ କିଛୁ କିଛୁ କ୍ଲୋରୋଫର୍ମ ଗୋଟିଏ ଲେଖାଏଁ ପାତ୍ରରେ ରଖି ଶୁଙ୍ଘିବାକୁ ଲାଗିଲେ । ଅଳ୍ପ ସମୟ ମଧ୍ୟରେ ସମସ୍ତେ ଅଚେତ ହୋଇ ଆପଣା ଆପଣା ଚଉକି ଉପରେ ଟଳି ପଡ଼ିଲେ ।

ଏହାପରେ କେତେଘଣ୍ଟା ଯିବା ପରେ ସେମାନଙ୍କର ଚୈତନ୍ୟ ପୁଣି ଫେରି ଆସିଲା । ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ମନୁଷ୍ୟର ଯନ୍ତ୍ରଣା ଦୂର କରିବାକୁ ସେମାନେ ଯେଉଁ ଔଷଧର ସନ୍ଧାନ କରୁଥିଲେ, ଏଥର ତାହା ମିଳିଲା ।

ଏବେ ବେଦନା ହରିବା ପାଇଁ ଆହୁରି ଅନେକ ଔଷଧ ବାହାରିଲାଣି ସତ; ମାତ୍ର ଡାକ୍ତର ହକ୍‌ମାନ୍ ଓ ଡାକ୍ତର ସିମ୍ପସନ୍ ଲୋକଙ୍କ କଷ୍ଟ ଦୂରକରିବା ପାଇଁ ଯେଉଁ ଔଷଧ ଆବିଷ୍କାର କରି ପାଇଛନ୍ତି, ସେଥିନିମନ୍ତେ ତାଙ୍କ ପାଦତଳେ ଆମର ମସ୍ତକ ସ୍ୱତଃ ଅବନତ ହୋଇଯାଏ ।



# ପଶୁ ପକ୍ଷୀଙ୍କର ବୁଦ୍ଧି ଅଛି କି ?

ପିଲାଙ୍କ ଭିତରୁ ଯେବେ କୌଣସି ସ୍ଥୂଳ ପ୍ରଶ୍ନର ଉତ୍ତର ଦେଇ ନ ପାରିଲା, ତେବେ ଶିକ୍ଷକ ରାଗିଯାଇ ବେଳେ ବେଳେ କହନ୍ତି— ସେ ପିଲାଟା ଗୋଟାଏ ଗଧ । ସେହିପରି କେହି ଯଦି ଗୋଟାଏ ବଡ଼ ଖରାପ କାମ କରି ପକାଏ, ଲୋକେ ତାକୁ କହନ୍ତି—ତୁ କଅଣ ମଣିଷ ? ତୁ ତ ଗୋଟାଏ ପଶୁ !

ତେବେ ପଶୁର କଅଣ ବୁଦ୍ଧି ନାହିଁ ? ପଶୁପକ୍ଷୀମାନଙ୍କର କାର୍ଯ୍ୟରୁ ଜଣାଯାଏ ଯେ ସେମାନଙ୍କର ମଧ୍ୟ ବୁଦ୍ଧି ଅଛି; କେବଳ କଥା କହିବା ଶକ୍ତି ନାହିଁ । ଯଦି ପଶୁପକ୍ଷୀମାନେ ଆମଭଳି କଥା କହି ପାରୁଥାନ୍ତେ, ତେବେ ସେମାନେ କହନ୍ତେ—ଆମର ବି ମନୁଷ୍ୟଭଳି ବୁଦ୍ଧି ଅଛି ।

ତୁମ୍ଭେମାନେ ଜାଣିଥିବ ଯେ, ଦେଶର ଚୋର ଡକାଏତମାନଙ୍କୁ ଜଗି ରହିବାପାଇଁ ସରକାର ପୋଲିସ ବିଭାଗ ରଖିଅଛନ୍ତି । ପୋଲିସ କର୍ମଚାରୀମାନେ ଆମର ବନ୍ଧୁ; ସେମାନେ ଆମକୁ ସାହାଯ୍ୟ କରୁ-ଅଛନ୍ତି । କିନ୍ତୁ ତମ ଭଳି ଖାଲି ମଣିଷ ଯେ ପୋଲିସ କାମ କରନ୍ତି, ତା ନୁହେଁ । ଚୋର ଜଗିବା ପାଇଁ ଆମଭିତରୁ କେତେ କେତେ କୁକୁର ରଖିଥାନ୍ତି । ଅଚିହ୍ନା ଲୋକ ଘର ଭିତରେ ପଶିଲେ କୁକୁର ଭୁକି ଉଠେ; ଘରର ଲୋକେ ସାବଧାନ ହୋଇଯାନ୍ତି । ପୋଲିସ ବିଭାଗରେ ମଧ୍ୟ କୌଣସି କୌଣସି ଠାରେ କୁକୁର ନିଯୁକ୍ତ ହୋଇଥାନ୍ତି । ଚୋରକୁ ଜଗିବାରେ ଓ ଧରିବାରେ ସେମାନେ ପୁଲିସକୁ ସାହାଯ୍ୟ କରନ୍ତି; ଏପରି କି ପୁଲିସମାନେ ଯେଉଁ କାମ କରିପାରିବେ ନାହିଁ, ସେପରି କାମ ସେମାନେ ସହଜରେ କରିପାରନ୍ତି ।

୧୯୫୮ ମସିହା ଅକ୍ଟୋବର ମାସ ପନ୍ଦର ତାରିଖରେ ଗୋଟାଏ ସମ୍ବାଦ ଖବରକାଗଜମାନଙ୍କରେ ବାହାରିଥିଲା । ଖବରଟି ହେଉଛି ଏହି—

ଡାକ ବିଭାଗର ଶହେ ବର୍ଷ ପୂର୍ତ୍ତି ହୋଇ ଯିବା ଉପଲକ୍ଷରେ ଗୋଟିଏ ପ୍ରଦର୍ଶନୀ ହେଉଥିଲା । ଭାରତର ପ୍ରଧାନ ମନ୍ତ୍ରୀ ଶ୍ରୀ ଜବାହରଲାଲ ନେହୁରୁ ତାହାକୁ ଉଦ୍‌ଘାଟନ କରୁଥିଲେ । ଏହି ସମୟରେ ପାଞ୍ଚୋଟି ପାର ଉଡ଼ିଆସି ତାଙ୍କ ପାଖେ ପହଞ୍ଚିଲେ । ଗୋଟିଏ ବିଶିଷ୍ଟ ସମ୍ବାଦ ଲେଖା ଯାଇଥିବା ଖଣ୍ଡିଏ କାଗଜ ସେମାନଙ୍କ

ଭିତରୁ ଗୋଟିକର ଗୋଡ଼ରେ ବନ୍ଧା ଯାଇଥିଲା । ପ୍ରଧାନ ମନ୍ତ୍ରୀ ସେହି କାଗଜରୁ ସମ୍ବାଦଟି ଜାଣିପାରିଲେ । ଏହି ପାରିଗୁଡ଼ିକ ଆମ ଓଡ଼ିଶା ପୋଲିସ ବିଭାଗର ।

ଏଥିରୁ ଜାଣିପାରିବ ଯେ ପାରିମାନେ ମଧ୍ୟ ମଣିଷପରି ପୋଲିସ ବିଭାଗରେ କାର୍ଯ୍ୟ କରନ୍ତି । ଅବଶ୍ୟ ସେମାନେ ଅନ୍ୟ ପୋଲିସ କର୍ମଚାରୀଙ୍କ ପରି ଶାନ୍ତିରକ୍ଷା କରିବାକୁ ବନ୍ଧୁକ ଧରନ୍ତି ନାହିଁ, କିନ୍ତୁ ସେମାନଙ୍କ ପରି ଖବର ନେବା ଆଣିବା କରନ୍ତି ।

ପାରିମାନେ ଡାକ ନେବା ଆଣିବାରେ ଧୁରନ୍ଧର । ଯୁଦ୍ଧ-ବେଳେ ସେମାନେ ହଜାର ହଜାର ମାଇଲ ଉଡ଼ି ଠିକ୍ ଜାଗାରେ ଖବର ପହଞ୍ଚାଇ ଦିଅନ୍ତି । କେତେକ ଯୁଦ୍ଧ ଜାହାଜରେ ପାରି ରଖା ଯାଇଥାଆନ୍ତି । ଦରକାର ପଡ଼ିଲେ ସେମାନଙ୍କ ଗୋଡ଼ରେ ବା ଦେହର ଅନ୍ୟସ୍ଥାନକୁ ସମ୍ବାଦ ଲେଖା କାଗଜ ବାନ୍ଧି ଛାଡ଼ି ଦିଆ-ଯାଏ । ସେମାନେ ଠିକ୍ ସ୍ଥାନକୁ ଉଡ଼ି ସମ୍ବାଦଟି ଦିଅନ୍ତି । ଆଚ୍ଛା, ମନୁଷ୍ୟ ଏହା କରିପାରିବ କି ?

ପଶୁପକ୍ଷୀମାନଙ୍କର ବୁଦ୍ଧି ନାହିଁ ବୋଲି କିଏ କହିବ ?

ତୁମେମାନେ ବ୍ୟାସକବି ଫକୀରମୋହନଙ୍କ ନାଁ ଶୁଣିଥିବ । ସେ ଗୋଟିଏ କୁକୁର ପାଳିଥିଲେ । ଦିନେ ତାଙ୍କର ଶ୍ରେଷ୍ଠ ପୁତ୍ରଟି ଘରେ ଶୋଇଥିଲା । ଏହି ସମୟରେ ଗୋଟିଏ ସାପ ସେ ଘର-ଆଡ଼କୁ ଯିବାକୁ ବସିଲା । ସେଠାରେ କୁକୁରଟି ଛଡ଼ା ଆଉ କେହି ନଥିଲେ । ସେ ସାପକୁ ଦେଖି ଭୁକି ଉଠିଲା ଓ ସାପକୁ ଘର ଭିତରକୁ ଛାଡ଼ିଲା ନାହିଁ । ଲୋକେ କୁକୁରର ଭୁକିବା ଶୁଣି ସେଠାକୁ ଗଲେ ଏବଂ ସାପକୁ ଦେଖି ତାକୁ ମାରି ପକାଇଲେ । କୁକୁର ଯୋଗୁଁ ପିଲାଟିର ପ୍ରାଣ ରହିଲା ସିନା ।

ତୁମମାନଙ୍କ ଭିତରୁ କେହି କେହି କୁକୁର ପୋଷିଥିବ । କୁକୁର ଯେପରି କଥା ମାନେ, ସେଥିରୁ ତାର ବୁଦ୍ଧି ଜଣାପଡ଼େ ।

ଅଷ୍ଟ୍ରେଲିଆର ଲୋକେ ବହୁତ ମେଣ୍ଢା ପାଳନ୍ତି । ଜଣ ଜଣଙ୍କର ହଜାର ହଜାର ମେଣ୍ଢା । ଏମାନଙ୍କୁ ଜଗିବା ପାଇଁ ଅନେକ ଲୋକ ଦରକାର ହୁଅନ୍ତେ । ମାତ୍ର କୁକୁରମାନେ ମେଣ୍ଢାମାନଙ୍କୁ ଜଗନ୍ତି ।



ସେମାନେ ମେଣ୍ଢାମାନଙ୍କୁ ନେଇ ପଡ଼ିଆକୁ ଯାନ୍ତି; ବେଳ ହୋଇଗଲେ ପୁଣି ସେମାନଙ୍କୁ ଅଟ୍ଟେଇ ଘରକୁ ନେଇ ଆସନ୍ତି । ଆମ ଦେଶରେ କେଳାମାନେ କୁକୁର ନେଇ ବଣବୁଦାକୁ ଯାଇ ଶିକାର କରନ୍ତି । କୁକୁର ନ ଥିଲେ ସେମାନେ ଚଳପାରନ୍ତେ ନାହିଁ । କୁକୁର ତାର ପ୍ରଭୁର ଉପକାର କରିବାକୁ ନିଜର ପ୍ରାଣ ମଧ୍ୟ ଦେଇପାରେ ।

ତୁମେ କେବେ ପୁରୀ ଯାଇଛ କି ? ଯଦି ଯାଇଥାଅ, ତେବେ ନିଶ୍ଚୟ ଅନେକ ହାତୀମାନଙ୍କୁ ଦେଖିଥିବ । ଏମାନଙ୍କର ବୁଦ୍ଧି

ଦେଖିଲେ ତୁମେ ଆଶ୍ଚର୍ଯ୍ୟ ହୋଇଯିବ । ମନେକର, ତୁମେ ଘର ଭିତରେ ବସି ଗୋଟାଏ ଗପ ବହି ପଢ଼ୁଛ । ତୁମ ମନ ପଢ଼ାରେ ଲାଗି ରହିଛି । ପଢ଼ା ସରିଗଲା । ତୁମେ ବହି ବନ୍ଦକରି ଦୁଆରକୁ ଚାହିଁଲ । ଦେଖିଲ, ଗୋଟିଏ ଶାଖାମୃଗ ଦେଢେଦେଢେ ଘର ଭିତରୁ ତମର କମିଜଟିଏ ନେଇ ପାଖ ଘର ଚାଳ ଉପରେ ବସିଛି । ତୁମେ ଯେବେ ତାକୁ ମାରିବାକୁ ଟେକା ଫିଙ୍ଗିଲ, ତେବେ ସେ କମିଜଟି ଧରି ଡ଼ିଆଁଟାଏ ମାରି ଆଉ ଟିକଏ ଦୂରକୁ ଚାଲିଯିବ । କିନ୍ତୁ ଯେବେ ଗୋଟାଏ ଜାଗାରେ ଗୁଡ଼ାଏ ମାଣେ କି ଦୁଇଟା କଦଳୀ ଥୋଇଦେବ ତେବେ ସେ ଆସି ତାକୁ ନେଇଯିବ ଓ ପୁଣି ପ୍ରଥମ ଥର ତମ କମିଜଟି ଫିଙ୍ଗିଦେଇ ଚାଲିଯିବ ।



ଆମେ କହୁଁ ଗଜମୂର୍ଖ, ଅର୍ଥାତ୍ ହାତୀଭଳି ମୂର୍ଖ । କିନ୍ତୁ କଥାଟା ଏକବାରେ ଭୁଲ । ହାତୀ ଆଦୌ ବୋକା ନୁହେଁ । ବଣରୁ

ହାତୀକୁ ଧରିଆଣି ଲୋକେ ପୋଷନ୍ତି । ପୋଷା ହାତୀ ମଣିଷର ଅନେକ କାମ କରେ । ବ୍ରହ୍ମଦେଶରେ ବହୁତ ହାତୀ ମିଳନ୍ତି । ସେଠାରେ ବଣରୁ ବଡ଼ ବଡ଼ କାଠ ଗଣ୍ଡି ବୋହି ଆଣିବା କାମ ସେମାନେ କରନ୍ତି ।

ଆମ ଓଡ଼ିଶାର ରାଜାଙ୍କ ଉପାଧି ହେଉଛି ଗଜପତି । ଏହାର କାରଣ ଏହି ଯେ ଓଡ଼ିଶାର ରାଜାଙ୍କର ଅନେକ ହାତୀ ଥିଲେ । ସେ କାଳରେ ତ ବୋମା ବା ଯୁଦ୍ଧଜାହାଜ ନ ଥିଲା ; ଲୋକେ ହାତୀ, ଘୋଡ଼ା କିମ୍ବା ରଥ ଉପରେ ବସି ଧନୁଶର ଧରି ଯୁଦ୍ଧ କରୁଥିଲେ । ଓଡ଼ିଶା ରାଜାଙ୍କର ହାତୀ ଉପରେ ବସି ଯୁଦ୍ଧକରିବା ସୈନ୍ୟ ଅନେକ ଥିଲେ । ସେଥିପାଇଁ ତାଙ୍କର ଉପାଧି ଥିଲା ଗଜପତି ଅର୍ଥାତ୍ ଅନେକ ହାତୀର ଅଧିକାରୀ । ଖାରବେଳ ବୋଲି ଓଡ଼ିଶାର ଜଣେ ରାଜା ତାଙ୍କ ହାତୀମାନଙ୍କୁ ନେଇ ଭାରତର ଅନେକ ରାଜ୍ୟ ଜିଣିପାରି ଥିଲେ ।

ହାତୀର ବୁଦ୍ଧି କିପରି ସେ ବିଷୟରେ ଗୋଟିଏ ଘଟଣାଟି କଥା କୁହାଯାଉଛି । ତୁମର ଯେ ଅବସ୍ଥା କଲା, ତାର ଅବସ୍ଥା କରିବାକୁ ତୁମର ମନ ହୁଏ । ହାତୀ ମଧ୍ୟ ସେହିପରି କରେ । ଥରେ ଗୋଟିଏ ପିଲା ଚିଡ଼ିଆଖାନା ଦେଖିବାକୁ ଯାଇଥିଲା । ସେ ହାତୀ ପାଖକୁ ଗଲା । ହାତୀଟା ମସ୍ତବଡ଼ ଶିକୁଳିରେ ବନ୍ଧା ହୋଇଥାଏ । ପିଲାଟି ଦୂରରେ ରହି ହାତୀକୁ ଗୋଟିଏ କଦଳୀ ଦେଖାଇଲା । ଖାଇବା ଲୋଭରେ ହାତୀ ତାର ଶୁଣ୍ଢ ବଢ଼ାଇଲାକ୍ଷଣି ପିଲାଟି ପଛକୁ ପଳାଇ ଆସିଲା । ପିଲାଟି ଏହିପରି ଦୁଇ ତିନଥର କଲା ପରେ ହାତୀ ଗୋଟାଏ କୌଶଳ କଲା । ସେ ଶୁଣ୍ଢକୁ ଗୋଟାଏ ପାଣି ଜାଗାରେ ବୁଡ଼ାଇ ଦେଲା । କିଛି ସମୟ ପରେ ଶୁଣ୍ଢଟାକୁ ଉପରକୁ ଟେକିଲା । ପିଲାଟି କୌତୁକ ଦେଖିବ ବୋଲି ଠିଆ ହୋଇଛି । ହଠାତ୍

ଶୁଣ୍ଢରୁ ଧାର ଧାର ପାଣି ତା' ଉପରେ ପଡ଼ିଲା । ବସ୍ତ୍ର ଗୋଟା ସୁଦ୍ଧା ଓଦା !

ଆଉ ଗୋଟାଏ ହାତୀ କଥା କହୁଛି; ଶୁଣ । ତା ମାହୁନ୍ତର ଗୋଟିଏ ଛୋଟ ପିଲା ଥାଏ । ପିଲାଟିର ମାଆ ତାକୁ ହାତୀ ପାଖରେ ଶୁଆଇଦେଇ ନିଜ କାମରେ ଚାଲିଯାଏ । ହାତୀ ପିଲାଟିକୁ ଜଗି ରହିଥାଏ । ବଗଡ଼ କୁକୁର କାହାକୁ ପିଲାପାଖକୁ ଛୁଇଁଦେ ନାହିଁ । ତା' ଉପରେ ମାଛି ବସିଲେ ଶୁଣ୍ଢରେ ଘଉଡ଼ାଇ ଦିଏ । ଦିନେ ମାଆ ପିଲାଟିକୁ ଶୁଆଇଦେଇ କୁଆଡ଼େ ଚାଲିଗଲା । କିଛି ସମୟ ପରେ



ପିଲାର ନିଦ ଭାଙ୍ଗିଗଲା । ସେ ଖାଲି କାନ୍ଦିବାକୁ ଲାଗିଲା । ହାତୀ ବିଚରା କରେ କଅଣ ? ମଣିଷ ପିଲାକୁ କିପରି ଚୁପ କରାଇବ ?

ସେ ଦେଖିଲା ଯେ, ପିଲା କାନ୍ଦିଲେ ମାଆ ତାକୁ ଦୋଳି ଖେଳାଇ ଶୁଆଇ ପକାଏ । ହାତୀଟି ଅତି ଧୀରେ ତାକୁ ଶୁଣ୍ଢରେ ଟେକିନେଇ ଦୋଳି ଖେଳାଇବା ପରି କଲା । କିଛି ସମୟ ପରେ ପିଲାକୁ ପୁଣି ନିଦ ହୋଇଗଲା । ହାତୀ ଧୀରେ ତାକୁ ତା ଶୋଇବା ଜାଗାରେ ରଖିଦେଲା ।

ଘୋଡ଼ାମାନେ ମଣିଷ ପାଇଁ କମ୍ କାମ କରନ୍ତି ନାହିଁ । ଆମ ଦେଶରେ ଘୋଡ଼ା ଗାଡ଼ି ଟାଣିବାର ତୁମେ ଦେଖିଥିବ । ଇଉ-ରୋପର ଲୋକେ ଘୋଡ଼ାଦ୍ୱାରା ହଳ ମଧ୍ୟ କରନ୍ତି । ଯୁଦ୍ଧରେ ମଧ୍ୟ ଘୋଡ଼ା ଦରକାର । ଘୋଡ଼ା ତାର ପ୍ରଭୁକୁ ପ୍ରାଣପଣେ ସାହାଯ୍ୟ କରେ । ଥରେ ପ୍ରତାପ ବୋଲି ଜଣେ ରାଜା ଥିଲେ । ତାଙ୍କର ଗୋଟିଏ ଘୋଡ଼ା ଥିଲା । ସେ ତା ନାଁ ଦେଇଥିଲେ ଚୈତକ । ଥରେ ସେ ଚୈତକ ଉପରେ ବସି ଲଢ଼େଇ କରିବାକୁ ଯାଇଥିଲେ । ଶତ୍ରୁ ସଂଖ୍ୟା ଅନେକ । ପ୍ରତାପ ଯୁଦ୍ଧ କରୁ କରୁ ଶତ୍ରୁଙ୍କ ଘେରରେ ପଡ଼ିଗଲେ । ଜଣେ ଲୋକ ଏତେ ଶତ୍ରୁଙ୍କ ଭିତରେ କଅଣ କରି ପାରିବ ? ଚୈତକ ବୁଦ୍ଧି ପାରିଲା [illegible] କୌଣସି ମତେ ଶତ୍ରୁଙ୍କ ଘେରରୁ ପଳାଇ ନ [illegible] ପ୍ରତାପଙ୍କ ପ୍ରାଣ ରକ୍ଷିବ ନାହିଁ । ସେ ପ୍ରତାପଙ୍କୁ [illegible]ପଳାଇଲା । ଶତ୍ରୁମାନେ ତାଙ୍କ ପଛେ ପଛେ ଗୋଡ଼ାଇଲେ । ମାତ୍ର ଚୈତକ୍ ସାଥିରେ ସେମାନେ ଦୌଡ଼ି ପାରିବେ କାହିଁ ? ବାଟରେ ଗୋଟାଏ ପାହାଡ଼ିଆ ନାଳ ପଡ଼ିଲା । ତାକୁ ପାର ହେବା ପାଇଁ ସେ ଡ଼େଇଁ ମାରିଲା । ମାତ୍ର ଏତେ ଜୋରରେ ସେ ଆଉ ପାଖରେ ପଡ଼ିଲା ଯେ ଆଉ ଉଠି ପାରିଲା ନାହିଁ । ତାର ପ୍ରାଣବାୟୁ ବାହାରିଗଲା । ଆଚ୍ଛା, କେତେଜଣ ଲୋକ ଏପରି ଆପଣା ଜୀବନ ଦେଇ ପ୍ରଭୁର ଜୀବନ ରକ୍ଷା କରିବେ ?

ସର୍କସରେ ହାତୀ, ଘୋଡ଼ା, ସିଂହ, ବାଘ, ଛେଳି, ମାଙ୍କଡ଼ ପ୍ରଭୃତି ଜୀବଜନ୍ତୁଙ୍କର ଖେଳ ଦେଖାଯାଏ । ତାହା ଦେଖିଲେ ଜାଣି ପାରିବ ଯେ ସେମାନଙ୍କର କେତେ ବୁଦ୍ଧି । ଯଦି ସର୍କସ ଦେଖିନ ଥାଅ, ତେବେ ଥରେ ଦେଖି ଆସିବ । ଦେଖିଲେ ଆଉ ଗଜମୂର୍ଖ ବୋଲି କାହାକୁ କହିବାକୁ ମନ ହେବ ନାହିଁ ।

# ପବନର ମୂଲ୍ୟ

ଥରେ ଶିକ୍ଷକ ପିଲମାନଙ୍କୁ ପଚାରିଲେ,—ମଣିଷର ଜୀବନ ରକ୍ଷାପାଇଁ ସବୁଠାରୁ ବେଶୀ ଦରକାର କଅଣ ?

ରାମ କହିଲା—ଭାତ, ଡାଲି ।

ଶିକ୍ଷକ କହିଲେ—ନାଁ, ଭାତ ଡାଲି ଦରକାର । ମାତ୍ର ସବୁଠାରୁ ବେଶୀ ଦରକାର ନୁହେଁ ।

ପାର୍ବତୀ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରେ । ସମସ୍ତେ ତା ଆଡ଼କୁ ଚାହିଁଲେ । ସେ କହିଲା—ମହାଶୟ, ପାଣି ସବୁଠାରୁ ବେଶୀ ଦରକାର ।

ଶିକ୍ଷକ କହିଲେ—ନାଁ, ପାଣି ମଧ୍ୟ ସବୁଠାରୁ ବେଶୀ ଦରକାରୀ ଜିନିଷ ନୁହେଁ । ପାଣି ନ ପିଇ ମନୁଷ୍ୟ କଅଣ ଥରେ ଓଳିଏ ରହି ପାରିବ ନାହିଁ ? କଅଣ ନ ହେଲେ ଆମେ ଘଡ଼ିଏ ମଧ୍ୟ ବଞ୍ଚି ପାରିବା ନାହିଁ ।

କାହାରଠାରୁ ଉତ୍ତର ନ ପାଇ ଶିକ୍ଷକ କହିଲେ—ଆଚ୍ଛା, ନାକ ଓ ପାଟି ବନ୍ଦ କରି କିଏ କେତେ ସମୟ ରହି ପାରୁଛ ଦେଖିଲ ?

ଟିକିଏ ନ ଯାଉଣୁ ସମସ୍ତେ ଅଣନିଶ୍ୱାସୀ ହୋଇ ପଡ଼ିଲେ ।

ତହୁଁ ଶିକ୍ଷକ କହିଲେ—ଏବେ ବୁଝିଲ ? ଆମେ ନିଶ୍ୱାସରେ ଯେଉଁ ପବନ ନେଉଁ, ସେଇ ହେଉଛି ସବୁଠାରୁ ବେଶୀ ଦରକାରୀ । ପବନ ନ ହେଲେ ଘଡ଼ିଏ ସୁଦ୍ଧା ବଞ୍ଚି ପାରିବା ନାହିଁ । ଭଗବାନ ଆମ ଘର ବାହାର ଚାରିଆଡ଼େ ପବନ ଦେଇଅଛନ୍ତି । ଯାହାର

ସେତେ ଦରକାର ସେ ସେତେ ପବନ ପାଇ ପାରୁଛୁ । ତେଣୁ ତାର ମୂଲ୍ୟ ଅଛି ବୋଲି କେହି ବୁଝୁନାହିଁ । ମାତ୍ର ତାର ମୂଲ୍ୟ ସବୁଠାରୁ ବେଶୀ ।

ପବନ ନ ଥିଲେ ମନୁଷ୍ୟ, ଗାଈ ଗୋରୁ, ପୋକ ମାଛି ସୁଦ୍ଧା ବଞ୍ଚନ୍ତେ ନାହିଁ । ଆମେ ଚାରିପାଖେ ଯେଉଁ ସୁନ୍ଦର ଗଛଲତା ଦେଖୁଅଛେ ସେ ସବୁ ନଥାନ୍ତା । ତୁମେ କହିବାର—ଜୀବଜନ୍ତୁଙ୍କର ସିନା ନିଃଶ୍ୱାସ ନେବାପାଇଁ ପବନ ଦରକାର, ଗଛଲତାଙ୍କର କ'ଣ ଦରକାର ? କିନ୍ତୁ ପ୍ରକୃତ କଥା ହେଉଛି—ଗଛର ମଧ୍ୟ ପବନ ଦରକାର । ଖାଲି ଏତିକି ତଫାତ୍ ଯେ ମନୁଷ୍ୟ ପ୍ରଭୃତି ଜୀବଜନ୍ତୁ ପବନରୁ ଗୋଟିଏ ଉପାଦାନ ଦେହଭିତରକୁ ନିଅନ୍ତି, ଗଛ ଲତାମାନେ ଅନ୍ୟ ଗୋଟିଏ ଉପାଦାନ ନିଅନ୍ତି ।

ଆମ ପୃଥିବୀକୁ ଘେରି ବାୟୁ ପୂରି ରହିଛି । ମାତ୍ର ଏହି ବାୟୁ ସବୁଠାରେ ଠିକ୍ ସମାନ ଭାବରେ ରହି ନଥାଏ । ବେଳେ ବେଳେ ପବନ ବେଗରେ ବହେ । ସେତେବେଳେ ତା ଜୋରରେ ଘର ଉଡ଼ିଯାଏ, କେତେ ଘର ଭାଙ୍ଗି ପଡ଼େ, ବଡ଼ ବଡ଼ ଗଛ ମଧ୍ୟ ଉପୁଡ଼ି ପଡ଼େ । ଏଥିରୁ ବୁଝି ପାରିବ ଯେ, ପବନର ବଳ କମ୍ ନୁହେଁ । ଆମ ପୁରାଣମାନଙ୍କରେ ପବନକୁ ଦେବତା କୁହାଯାଇଅଛି । ଯାହାର ଏତେ ବଳ ତାକୁ ଦେବତା ନକହି ଆଉ କ'ଣ କହିବେ ?

ମନୁଷ୍ୟ ଭାବେ—ନିଜର ଦେହ ମିହନ୍ତ ଯେତେ କମ୍ ହୁଏ ସେତେ ଭଲ । ନଈରେ ଡଙ୍ଗା ଚଳାଇଲା ବେଳେ ନାଉରୀକୁ କେତେ କଷ୍ଟରେ ଅହୁଲା ମାରିବାକୁ ପଡ଼େ । ମାତ୍ର ସେ ଦେଖିଲା

ଯେ, ନୌକାରେ ପାଲ ଟାଣି ଦେଲେ ତାକୁ ଆଉ ପରିଶ୍ରମ କରି-ବାକୁ ପଡ଼ିବ ନାହିଁ । ପବନ ପାଲରେ ବାଜି ନୌକାକୁ ଠେଲ ଠେଲ ନେଇଯିବ । ସେ ନୌକାରେ ପାଲ ବାନ୍ଧି ପବନକୁ ତାହା ଚଳାଇ-ବାରେ ଲଗାଇଲେ । ଆଜିକାଲିର ବାଷ୍ପୀୟ ଜାହାଜ ବାହାରିବା ଆଗରୁ ମନୁଷ୍ୟ ପାଲଟଣା ଜାହାଜରେ ବସି ସମୁଦ୍ରରେ ଯିବା ଆସିବା କରୁଥିଲେ । ଆଗ କାଳରେ ଆମ ଓଡ଼ିଶାର ଲୋକେ ଏଇପରି ପାଲଟଣା ଜାହାଜରେ ବସି ସମୁଦ୍ରରେ ହଜାର ହଜାର ମାଇଲ ଯାଇ ଦୂର ବିଦେଶରେ ବେପାର ବାଣିଜ୍ୟ କରୁଥିଲେ ।

ତୁମେ ପବନକୁ କିପରି କାମରେ ଲଗାଉଛ ଟିକିଏ ଭାବିଲେ ବୁଝିପାରିବ । ଆଚ୍ଛା, ସ୍କୁଲ ଛୁଟି ହେଲାକ୍ଷଣି ତୁମେ ଯେଉଁ ଫୁଟବଲ ନେଇ ଖେଳପଡ଼ିଆକୁ ଧାଇଁଯାଅ, ତା ଭିତରେ ଅଛି କଣ ? ତା ଭିତରେ ପବନ ଛଡ଼ା ଆଉ କିଛି ନାହିଁ । ତୁମ ବାପା ବା ଭାଇ ଯେଉଁ ସାଇକେଲ ଚଢ଼ନ୍ତି ତା ଚକରେ ପବନ ଭର୍ତ୍ତି କରାଯାଇଥାଏ; ମୋଟର ଗାଡ଼ିର ଚକରେ ମଧ୍ୟ ପବନ ଦିଆଯାଇଥାଏ । ସାଇକେଲର ବା ମୋଟର ଗାଡ଼ିର ଚକ ଭିତରେ ଯେଉଁ ପବନ ଥାଏ, ଆମ ଚାରିପାଖେ ସେଇ ପବନ । ତଫାତ୍ କେବଳ ଯେ, ଚକଭିତରେ ଅଳ୍ପ ଜାଗାରେ ବେଶୀ ପବନ ଖୁନ୍ଦି ଦିଆଯାଇଥାଏ । ବାହାରେ ପବନ ସେପରି ନୁହେଁ । ଚକରେ ବେଶୀ ପବନ ପୂରାଇବା ପାଇଁ ଆମେ ଇନ୍‌ଫ୍ଲେଟର୍ ବା ପମ୍ପ ବ୍ୟବହାର କରୁ ।

ଆମ୍ଭେମାନେ ପବନକୁ ଦେଖି ପାରୁନାହିଁ; ମାତ୍ର ପବନ କହିଲେ ଆମ ଦେହରେ ବାଜେ । ଯେ କୌଣସି ପଦାର୍ଥର ଗୋଟାଏ ଆକାର ଅଛି, ମାତ୍ର ପବନର କୌଣସି ଆକାର ନାହିଁ । ମାଣିଗନ୍ ପବନ ଯେଉଁ ପାତ୍ରରେ ଅଟକି ରହେ, ହେଇ ପାତ୍ରର

ଆକାର ହିଁ ତା'ର ଆକାର । ଆଉ ଗୋଟିଏ କଥା, ପ୍ରତି ପଦାର୍ଥର କିଛି ନା କିଛି ଓଜନ ଅଛି; କାହାର ଓଜନ କମ୍, କାହାର ଅବା ବେଶୀ । ପବନର ମଧ୍ୟ ଓଜନ୍ ଅଛି ।

ତୁମେ କହିବ—ଆମ ଚାରିପାଖରେ ପବନ ଘେରି ରହିଛି । ଆମ ଉପରେ ଯେ କେତେ ଉଚ୍ଚକୁ ପବନ ରହିଛି ଠିକଣା ନାହିଁ । ପଣ୍ଡିତମାନେ କହନ୍ତି—ପୃଥିବୀ ଉପରକୁ ଦୁଇଶମାଇଲ ଯାଏ ପବନ ଅଛି । ଏତେ ପବନର ଓଜନ ଆମ ଉପରେ ପଡ଼ନ୍ତା, ଆମେ ଚାପି ହୋଇ ଭୂଇଁରେ ମିଶିଯାନ୍ତେ । କାହିଁ, ସେପରି ତ ହେଉ-ନାହିଁ ।

ତୁମେ ଯାହା କହିଲ ସତ, ମାତ୍ର ପବନର ଓଜନ ଅତି କମ୍; ଏତେ କମ୍ ଯେ ତାହା ଆମକୁ ଆଦୌ ଜଣାଯାଏ ନାହିଁ । ପୁଣି ଆଉ ଗୋଟିଏ କଥା । ପୃଥିବୀ ପାଖରେ ଥିବା ପବନ ଟିକଏ ଗାଢ଼ା; ଉପର ପବନ ଖୁବ୍ ହାଲୁକା । ଗୁଡ଼ିଏ ତୁଳା ଏକାଠି ଗଦା କରି ରଖିଦେଲେ ଦେଖିବ, ତଳର ତୁଳାଗୁଡ଼ିକ ଚାପରେ ବସିଯାଇଥାଏ, କିନ୍ତୁ ଉପରର ତୁଳା ହାଲୁକା ଥାଏ । ପବନ ବିଷୟରେ ଠିକ୍ ସେଇପରି ।

ଉପର ପବନ ତଳ ପବନକୁ ଚାପି ଦେଉଛି । ମାତ୍ର ସବୁଠାରେ ସବୁବେଳେ ଏହି ଚାପ ସମାନ ନ ଥାଏ । ଖରା ବରଷା ପାଗ ଅନୁସାରେ ଏହି ଚାପ ଭିନ୍ନ ହୁଏ । ପବନର ଚାପକୁ ମାପିବା ପାଇଁ ଲୋକେ ଗୋଟାଏ ଯନ୍ତ୍ର ବାହାର କରିଅଛନ୍ତି । ତାର ନାମ ବାୟୁଚାପ-ମାନଯନ୍ତ୍ର ବା ବାରୋମିଟର୍ । ବାୟୁଚାପ କେତେ ତାହା ଏହି ଯନ୍ତ୍ରରୁ ଜଣାପଡ଼େ, ସମତଳ ଜାଗାରେ ଏକବର୍ଗ ଇଞ୍ଚ ସ୍ଥାନ ଉପରେ ବାୟୁଚାପ ହେଉଛି ସାଧାରଣତଃ ସାଢ଼େ ସାତ ସେର । ଆମେ ଯେତେ ଉଚ୍ଚକୁ ଉଠିବା, ବାୟୁଚାପ ସେତିକି କମ୍ ହେବ ।




ଯାହାହେଉ ପବନକୁ ବନ୍ଦକରି କପରି କାମରେ ଲଗାଯାଉଅଛି, ଶୁଣ । ସାଇକେଲରେ ଓ ଫୁଟବଲ୍ ବ୍ଲାଡର ଭିତରେ ବନ୍ଦୀ ହୋଇ ସେ କପରି ଆମପାଇଁ କାମ କରୁଛି ତା ତୁମ୍ଭେମାନେ ଜାଣ । ମାତ୍ର ଅନେକ ବଡ଼ ବଡ଼ କଳ-କାରଖାନା ମଧ୍ୟ ପବନ ବଳରେ ଯେ ଚଳେ, ସେ କଥା ବୋଧହୁଏ ଜାଣନାହିଁ । ପିଲାମାନେ କାଗଜ ବା ତାଳପତ୍ରର ଗୋଟିଏ ଚକ କରି ତାକୁ ପବନ ଆଡ଼କୁ ଦେଖାଇଲେ ସେ ଘୂରେ । ସେହିପରି ବଡ଼ ବଡ଼ ଚକକୁ ପବନଦ୍ୱାରା ଚଳାଇ କଳକାରଖାନାର କାମ କରାଯାଉଛି । ପବନ କୂଅରୁ ପାଣି କାଢ଼ୁଛି, ଗହମକୁ ଅଟା କରୁଛି ଓ ଏପରି ଅନେକ କାମ କରୁଛି ।

କୌଣସି ପାତ୍ରକୁ ବାୟୁ ଶୂନ୍ୟ କରିଦେଇ ସେଥିରେ ଯାହା ରଖ, ତାହା ଅନେକ ଦିନଯାଏ ପଚିଯିବନାହିଁ । ଇଉରୋପ, ଆମେରିକା ପ୍ରଭୃତିରୁ ଆମଦେଶକୁ ଟିଣରେ ଭର୍ତ୍ତିହୋଇ ଦୁଧ ଆସେ; ମାତ୍ର ଟିଣକୁ ବାୟୁ ଶୂନ୍ୟ କରାଯାଇ-ଥିବାରୁ ସେ ଦୁଧ ମାସ ମାସ ପରେ ମଧ୍ୟ ଖାଇଲା ବେଳକୁ ସଜ ଦୁଧପରି ଜଣାଯାଏ । ବିସ୍କୁଟ ଟିଣକୁ ମଧ୍ୟ ସେହିପରି ବାୟୁ ଶୂନ୍ୟ କରାଯାଇ-ଥିବାରୁ ମାସ ମାସ ପରେ ମଧ୍ୟ ବିସ୍କୁଟ ଟାଟ୍କା ରହିଥାଏ ।

ଆମେମାନେ ଝାଡ଼ୁଣୀରେ ଘର ଓଳାଉଁ । ମାତ୍ର ଇଉରୋପର ଅନେକ ସ୍ଥାନରେ ଘର ଓଳାଇବା ପାଇଁ ଏକ ପ୍ରକାର ଯନ୍ତ୍ର ବ୍ୟବହାର କରାଯାଏ । ତାହା ବାୟୁଶୂନ୍ୟ ହୋଇଥିବାରୁ ତାର ମୁହଁ ଫିଟିଲା ମାତ୍ରେ ଧୂଳି, ଛିଣ୍ଡା କାଗଜ ପ୍ରଭୃତି ଭିତରକୁ ଟାଣିନିଏ । ପବନ ଏହିପରି ଘର ଝାଡ଼ୁ ମଧ୍ୟ କରୁଛି ।

ଏବେ ପବନର ତକିଆ, ବିଛଣା ପ୍ରଭୃତି ମିଳୁଛି । ରବର ଦିଆ ଏକ ପ୍ରକାର କନାରେ ସେ ସବୁ ତିଆରି । ସେଥିରେ ମୋଟରର ପବନ ପୂରାଇ ଦେଲେ କାମ ଚଳିଲା । ଏ ପ୍ରକାର ତକିଆ ବା ବିଛଣା ତୂଳାର ଜିନିଷଠାରୁ ଆହୁରି ନରମ । ମନୁଷ୍ୟ ପବନ ଦେବତାକୁ ବନ୍ଦୀକରି ତାହାଦ୍ୱାରା ଆପଣାର ଅନେକ କାମ କରୁଛି । ଏବେ ବୁଝିଲ; ପବନର ମୂଲ୍ୟ କେତେ ?

---

## ମୂକ ବଧିରଙ୍କ ଶିକ୍ଷା

ତୁମେ ଯଦି କାହାକୁ କିଛି ପଚାର ଏବଂ ସେ କିଛି ଉତ୍ତର ନ ଦିଏ ତେବେ ତୁମେ କହିପକାଅ—ଲୋକଟା କାଲ ନା କଅଣ ?

ଏହିପରି ସମସ୍ତେ କହନ୍ତି । ବଧିର ବା କାଲ କହିଲେ ଶୁଣିବା ଶକ୍ତି କମ୍ ଥିବା ବା ଆଦୌ ନଥିବା ଲୋକକୁ ବୁଝାଏ । ତୁମ କଥା ଯେବେ କେହି ଶୁଣି ନପାରେ; ତେବେ ତାକୁ କାଲ କହିବା ଠିକ୍ ହେବ । ମାତ୍ର ସେ ଯେବେ ତୁମ କଥା ଶୁଣି ସୁଦ୍ଧା କିଛି କହି ନ ପାରେ ତେବେ ସେ କାଲ ନୁହେଁ । ଯାହାର କହିବା ଶକ୍ତି ନଥାଏ, ତାକୁ ଆମେ କହୁଁ ମୂକ ବା ଘୁଙ୍ଗା ।

ଆମଦେଶରେ ଅନେକ ମୂକ ଓ ବଧିର ଲୋକ ଅଛନ୍ତି । ଅତି ଅଳ୍ପଲୋକ କେବଳ ମୂକ ବା କେବଳ ବଧିର ହୁଅନ୍ତି । ଜଣେ ଲୋକ ବଧିର ହେଲେ ସେ ମୂକ ମଧ୍ୟ କାହିଁକି ହୁଏ ? ଏ ପ୍ରଶ୍ନର ଉତ୍ତର ସହଜ । ଟିକଏ ଭାବ ଦେଖ । ଆମେ କଥା କହି ଶିଖୁ କିପରି ? ପିଲାମାନେ ବାପ ମାଆ ଭାଇ ଭଉଣୀ ପ୍ରଭୃତିଙ୍କ-ଠାରୁ କଥା ଶୁଣନ୍ତି । ତହୁଁ ନିଜେ ସେହିପରି କହିବାକୁ ଚେଷ୍ଟା କରନ୍ତି । ଯେ ଜନ୍ମରୁ ବଧିର ସେ କାହାରିଠାରୁ କିଛି ଶୁଣିପାରେନା ନାହିଁ । ତେଣୁ ସେ କଥା କହି ଶିଖିବ କିପରି ?

ପୃଥିବୀରେ ଏହିପରି ମୂକ ଓ ବଧିର ଲୋକ ଅନେକ ଅଛନ୍ତି । ଏମାନଙ୍କ ଜୀବନ ବଡ଼ ଦୁଃଖରେ କଟେ । ସେମାନେ ପାଠ ପଢ଼ି ପାରନ୍ତି ନାହିଁ । ଫଳରେ ଜୀବନରେ କିଛି ଉନ୍ନତି କରିପାରନ୍ତି ନାହିଁ । ଉନ୍ନତି କରିବା ତ ଦୂରର କଥା, ନିଜର ପେଟ ପୋଷିବାକୁ ମଧ୍ୟ ସେମାନଙ୍କର ଶକ୍ତି ନଥାଏ ।

ମୂକ ବଧିରମାନଙ୍କ ଜୀବନ କି ଦୁଃଖରେ କଟୁଥିବ ଟିକଏ ଭାବ । ତୁମେ ଦିନସାରା କେତେକଥା ଶୁଣୁଛ ; ଗୀତବାଦ୍ୟ ଶୁଣି କେତେ ଆନନ୍ଦ ପାଉଛ ; ମାତ୍ର ଯେ ବଧିର, ସେ ଏ ସବୁ କିଛି ଜାଣେନା । ତୁମେ ଶିକ୍ଷକ ଓ ପିତାମାତା ପ୍ରଭୃତିଙ୍କଠାରୁ ପ୍ରତିଦିନ କେତେକଥା ଶୁଣି ତୁମର ଜ୍ଞାନଭଣ୍ଡାର ବଢ଼ାଉଛ; ବଧିର ପକ୍ଷରେ ସେ କଥା ସ୍ୱପ୍ନ ।

ଆମ ମନର କୌଣସି ଚିନ୍ତା ଅନ୍ୟକୁ ଜଣାଇବା ପାଇଁ ଆମେ କଥା କହୁଁ, କିନ୍ତୁ ଯେ ମୂକ ଅର୍ଥାତ୍ ଯାହାର କଥା କହିବାର ଶକ୍ତି ନାହିଁ, ସେ କଅଣ କରିବ ? ହୁଏତ ସେ ହାତଠାରି ତା ମନ କଥା ବୁଝାଇବାକୁ ଚେଷ୍ଟା କରିବ । ସେଥିରୁ ଆମେ ଗୋଟାଏ ଅଧେ

ବୁଝିବା, ଅଧିକାଂଶ ବୁଝିପାରିବା ନାହିଁ ।; ତାଉଁଦ୍ୱେ କଣ ମନର ସବୁକଥା ପ୍ରକାଶ କରିହେବ ?

ମୂକ—ବଧିର ଲୋକଙ୍କୁ ଦେଖିଲେ ନିଶ୍ଚୟ ମନରେ କଷ୍ଟ ହେବ । ସେମାନେ ବଡ଼ ହତଭାଗା । ସଂସାରରେ ସୁଖ କଣ ସେମାନେ ଜାଣିପାରନ୍ତି ନାହିଁ । ସେମାନଙ୍କର ଅପରାଧ ବା କଅଣ ? ଭଗବାନ ଯଦି ସେମାନଙ୍କୁ ଶୁଣିବାକୁ ଶକ୍ତି ଦେଇଥାନ୍ତେ, ତେବେ ସେମାନେ ମଧ୍ୟ ଆମ ଅମଭଳି କଥା କହି ପାରୁଥାନ୍ତେ ଓ ସୁଖରେ ଜୀବନ କଟାଇଥାନ୍ତେ ।

ଭଗବାନ କୌଣସି ମନୁଷ୍ୟଙ୍କୁ ଯେବେ ଦୁଃଖ ଦିଅନ୍ତି, ତେବେ ଅନ୍ୟ ଲୋକେ ତାର ଦୁଃଖ ହରିବାକୁ ଚେଷ୍ଟା କରନ୍ତି ।

ଆମ ଭାରତରେ ମୂକ ବଧିରଙ୍କ ସଂଖ୍ୟା କମ୍ ନୁହେଁ । ଏମାନଙ୍କ ଶିକ୍ଷାଦୀକ୍ଷା ପାଇଁ ଆଗେ କିଛି ଚେଷ୍ଟା ନଥିଲା । ସେମାନେ ଅତି କଷ୍ଟରେ ଜୀବନ କଟାଉଥିଲେ । କ୍ରମେ ଜ୍ଞାନୀ ଲୋକମାନେ ଭାବିଲେ—କିପରି ସେମାନଙ୍କୁ କଥା କହିବାକୁ ଶିଖାଇଦେଇ ହେବ ?

ଆମଦେଶ ଅପେକ୍ଷା ଇଂଲଣ୍ଡ, ଆମେରିକା ପ୍ରଭୃତି ଦେଶର ଲୋକେ ଏ ଦିଗରେ ବହୁତ ଅଧିକ କାମ କରିଅଛନ୍ତି । ସେମାନେ ଦେଖିଲେ ଯେ ଯେଉଁମାନଙ୍କୁ ସାଧାରଣତଃ ବଧିର ବୋଲି କୁହାଯାଏ, ସେମାନେ ସମସ୍ତେ ପୂର୍ଣ୍ଣମାତ୍ରାରେ ବଧିର ନୁହନ୍ତି । ଖୁବ୍ ଜୋରରେ ଶବ୍ଦକଲେ ସେମାନଙ୍କ ମଧ୍ୟରୁ ଅନେକେ ଟିକିଏ ଟିକିଏ ଶୁଣି ପାରନ୍ତି । ବଧିରମାନଙ୍କ ଶୁଣିବାଶକ୍ତି ଖୁବ୍ କମ୍, କାହାର କାହାର ଆଦୌ ନଥାଏ । ଜ୍ଞାନୀଲୋକେ ଗୋଟାଏ ଯନ୍ତ୍ର ବାହାର କରିଅଛନ୍ତି, ତାହାଦ୍ୱାରା କାହାର ଶୁଣିବା ଶକ୍ତି କେତେ ତାହା ଜଣା

ଛଡ଼ଯାଏ । ତେଣୁ କେତେ ଜୋରରେ ଶବ୍ଦ କଲେ ସେ ଶୁଣି ପାରିବ, ତାହା ସ୍ଥିର କରନ୍ତୁ। ତାର ଶୁଣିବା ପାଇଁ ସେତେ ଜୋରରେ ତାକୁ କୁହାଯାଏ ।

ଆମର ଭୂଣ୍ଡରେ କଥା କହିବା ଶବ୍ଦ ବହୁତ ସେତେ ଉଚ୍ଚ ହୁଏନି । ମାତ୍ର ବଧିରଙ୍କୁ ଶୁଣାଇବା ପାଇଁ ଭୂଣ୍ଡର ଶବ୍ଦକୁ ଯନ୍ତ୍ର-ଦ୍ୱାରା ଉଚ୍ଚ କରାଯାଇଥାଏ ।

ତୁମ୍ଭମାନଙ୍କ ଭିତରୁ କେହି କେହି ବଜାରରେ ଗଲାବେଳେ ରେଡ଼ିଓର ଗୀତ ଆଦି ଶୁଣିଥିବ । ତାର ସ୍ୱର ଏତେ ଉଚ୍ଚ ଯେ ଅଧମାଇଲ ଦୂରକୁ ମଧ୍ୟ ଶୁଣାଯିବ । ଲୋକ ଗାଉଥିବା ଗୀତର ସ୍ୱରକୁ ଯନ୍ତ୍ରଦ୍ୱାରା ଏତେ ଉଚ୍ଚ କରାଯାଇଥାଏ । ଏହି ଯନ୍ତ୍ରର ନାଁ ଆମ୍ପ୍ଲିଫାଏର୍ ବା ଶବ୍ଦବର୍ଦ୍ଧକ ଯନ୍ତ୍ର । ଇୟର୍ ଫୋନ୍ ବା ଶ୍ରବଣ ଯନ୍ତ୍ରକୁ ଥରେ ବଧିର ଲୋକର କାନରେ ଦେଇ ଆମ୍ପ୍ଲିଫାଏର ଦ୍ୱାରା ଉଚ୍ଚଧ୍ୱନି ଶୁଣାଇଲେ ସେ ଶୁଣି ପାରିବ । ବଧିର ଲୋକ ଶୁଣିଲେ ତେଣିକି ସେ କଥା କହିବାକୁ ଶିଖିବା ସହଜ ।

ଆମେରିକାରେ ମୂକ ବଧିରମାନଙ୍କ ପାଇଁ ଗୋଟିଏ କେନ୍ଦ୍ର ଅଛି । ସେଠାରେ ସେମାନଙ୍କୁ ଶୁଣିବା ଓ କହିବା ଶିକ୍ଷା ଦିଆଯାଏ । ଶିକ୍ଷା ଦେବାପାଇଁ ଅନେକ ଉଚ୍ଚଶିକ୍ଷିତ ଲୋକ ନିଯୁକ୍ତ ଅଛନ୍ତି । ସେମାନଙ୍କ ଚେଷ୍ଟାରେ ଶହ ଶହ ମୂକ ଓ ବଧିର ଶୁଣିବାକୁ ଓ କହିବାକୁ ସମର୍ଥ ହୋଇ ସୁଖରେ ଜୀବନ କଟାଉଅଛନ୍ତି ।

ଆମ ଦେଶରେ ଅବଶ୍ୟ ମୂକ ଓ ବଧିରମାନଙ୍କ ପାଇଁ ଏତେ ବେଶୀ ଉଦ୍ୟମ ହୋଇନାହିଁ । ପ୍ରାୟ ୭୦ ବର୍ଷ ତଳେ ପ୍ରଥମେ କଲିକତାରେ ଗୋଟିଏ ମୂକ ଓ ବଧିର ବିଦ୍ୟାଳୟ ସ୍ଥାପନ

କରାଯାଇଥିଲା । ବିଲାତ ଓ ଆମେରିକାରୁ ବିଶେଷ ଶିକ୍ଷାପାଇଥିବା କେତେଜଣ ମଧ୍ୟ ଏଥିରେ ଶିକ୍ଷକ ଥିଲେ । ସେମାନଙ୍କ ଚେଷ୍ଟାରେ କେତେ ମୂକ—ବଧିର ଲେଖାପଢ଼ା ଶିଖିବାକୁ ସମର୍ଥ ହେଲେ । ପରେ ଏହି ବିଦ୍ୟାଳୟରେ ଶିଳ୍ପ ଶିକ୍ଷା ଦେବାର ବ୍ୟବସ୍ଥା ହୋଇଥିଲା । ବର୍ତ୍ତମାନ ଏହି ବିଦ୍ୟାଳୟରେ ଶତ ଶତ ଛାତ୍ର ଶିକ୍ଷା ପାଉଅଛନ୍ତି ।

ଆମ ଓଡ଼ିଶାର ଜଣେ ମୂକବଧିର ହେଉଛନ୍ତି ଶ୍ରୀ ବିପିନ ବିହାରୀ ଚୌଧୁରୀ । ସେ ଏହି କଲିକତା ମୂକ ବଧିର ବିଦ୍ୟାଳୟରେ ଶିକ୍ଷା ପାଇଥିଲେ । ତାଙ୍କର ଚିତ୍ରବିଦ୍ୟାରେ ବଡ଼ ଦକ୍ଷତା ଆସିଥିଲା । ବିଦ୍ୟାଳୟ ଶିକ୍ଷା ଶେଷକରି ସେ ବିଲାତ ଯାଇଥିଲେ ଓ ସେଠାରେ ଆହୁରି ଉଚ୍ଚଶିକ୍ଷା ପାଇଥିଲେ । ସେ ଓଡ଼ିଶାରେ ଗୋଟିଏ ମୂକ ବଧିର ବିଦ୍ୟାଳୟ ସ୍ଥାପନ-କରି ସେଥିରେ ବହୁ ମୂକ-ବଧିର ଛାତ୍ରଙ୍କୁ ଶିକ୍ଷା ଦେଉଅଛନ୍ତି । ସରକାରଙ୍କ ଓ ସାଧାରଣ ଭଦ୍ରଲୋକଙ୍କ ସାହାଯ୍ୟରେ ବିଦ୍ୟାଳୟଟି ଚଳୁଛି । ଛାତ୍ରଛାତ୍ରୀମାନେ ଲେଖାପଢ଼ା, ଚିତ୍ରବିଦ୍ୟା ଓ ହସ୍ତଶିଳ୍ପ ପ୍ରଭୃତି ଶିକ୍ଷା କରନ୍ତି । ଅବଶ୍ୟ ଉପଯୁକ୍ତ ଯନ୍ତ୍ରସବୁର ଅଭାବରୁ ସେମାନଙ୍କୁ କଥା କହିବା ଓ ଶୁଣାଇବା ଭଲରୂପେ ଶିକ୍ଷା ଦିଆଯାଇ ପାରୁନାହିଁ, ମାତ୍ର ସେମାନେ ଯେତିକି ଶିଖୁଛନ୍ତି, ସେଥିରେ ସେମାନଙ୍କର ଯଥେଷ୍ଟ ଉପକାର ହେଉଛି ।

———

# ସମ୍ବାଦ ପ୍ରେରଣ

ଦୂରରେ ଥିବା କୌଣସି ବନ୍ଧୁଙ୍କ ପାଖକୁ କୌଣସି ଖବର ପଠାଇବାକୁ ହେଲେ ତୁମ ପାଇଁ ଅନେକ ପ୍ରକାର ସୁବିଧା ଅଛି । ଖଣ୍ଡେ ଚିଠି ଡାକ ବାକ୍ସରେ ପକାଇଦିଅ । ଦିନେ ଦୁଇଦିନ ଭିତରେ ଚିଠିଟି ତୁମ ବନ୍ଧୁଙ୍କ ପାଖରେ ପହଞ୍ଚିବ । ଯଦି ଖବର ଖୁବ୍ ଜରୁରୀ ଓ ଆହୁରି ଶୀଘ୍ର ପହଞ୍ଚିବା ଦରକାର, ତେବେ କୌଣସି ଟେଲିଗ୍ରାଫ୍ ଅଫିସରେ ଟେଲିଗ୍ରାମ କରିଦିଅ । ଦୁଇ ତିନ ଘଣ୍ଟା ଭିତରେ ତୁମ ବନ୍ଧୁ ଖବର ପାଇଯିବେ । ଯଦି ଟେଲିଫୋନର ସୁବିଧା ଥାଏ ତେବେ ତୁମେ ସଙ୍ଗେ ସଙ୍ଗେ ଟେଲିଫୋନଦ୍ୱାରା ବନ୍ଧୁଙ୍କ ସାଥିରେ କଥାବାର୍ତ୍ତା ହୋଇପାରିବ ।

ମାତ୍ର ଆଗ କାଳର ଲୋକେ ଦୂରରେ ଥିବା କାହାରି ପାଖକୁ ସମ୍ବାଦ ପଠାଇବାରେ ବଡ଼ ହଇରାଣ ହେଉଥିଲେ । ଆଜିକାଲି ରେଳଗାଡ଼ି, ମୋଟର ଗାଡ଼ି, ଉଡ଼ାଜାହାଜ ପ୍ରଭୃତିର ପ୍ରଚଳନ ହେବାରୁ ଏତେ ସହଜରେ ଦୂର ସ୍ଥାନକୁ ଖବର ପଠାଇ ହେଉଛି; ମାତ୍ର ସେ କାଳରେ ଏ ପ୍ରକାର ସୁବିଧା ନଥିଲା । ତେଣୁ ସମ୍ବାଦ ପଠାଇବା ଗୋଟାଏ ବଡ଼ କଠିନ କାର୍ଯ୍ୟ ଥିଲା । କାହାରି ପାଖକୁ ଖବର ପଠାଇବାକୁ ହେଲେ ଜଣେ ଲୋକକୁ ଚିଠି ନେଇ ଯିବାକୁ ପଡ଼ୁଥିଲା । ସେ ଚଞ୍ଚଳ ଯାଇ ପାରିବ ବୋଲି କେବେ କେବେ ଘୋଡ଼ାରେ ବସି ଯାଉଥିଲା । ସେଥିରେ ପୁଣି ବାଟ ଘାଟ ବଡ଼ ଖରାପ ଥିଲା ଓ ଚୋର ଡକାଏତମାନଙ୍କର ଭୟ ଥିଲା ।

ରଜା ମହାରଜାମାନେ ତାଙ୍କ ରାଜ୍ୟର ସବୁଅଞ୍ଚଳର ଖବର ବୁଝିବା ପାଇଁ ନଜର ଲୋକ ରଖିଥିଲେ । ସେମାନେ ଚିଠି ନେବା

ଆଣିବା କରୁଥିଲେ । କ୍ରମେ ସାଧାରଣ ଲୋକଙ୍କର ଚିଠି ନେବାର ବନ୍ଦୋବସ୍ତ ହେଲା ।

ଖଣ୍ଡିଏ ଚିଠି ନେଇ ଜଣେ ଲୋକ କୌଣସି ସ୍ଥାନକୁ ଯିବା-ପାଇଁ ଯେତିକି ପରିଶ୍ରମ ଓ ଖରଚ ଦରକାର, ଦଶ ପଚାଶ ଚିଠି ନେଇଗଲେ ମଧ୍ୟ ପ୍ରାୟ ସେତିକି ପରିଶ୍ରମ ଓ ସେତିକି ଖରଚ । ତେଣୁ ବେଶୀ ଚିଠି ହେଲେ ପ୍ରତି ଚିଠିର ପଠାଇବା ଖରଚ ଖୁବ୍ କମ୍ ପଡ଼ିବ । ଏହା ବୁଝିର ସରକାର ଡାକ ବିଭାଗ ବସାଇଲେ । ପ୍ରଥମେ ଇଂଲଣ୍ଡରେ ଡାକ ବିଭାଗ ଖୋଲିଲା । ଚିଠି ପଠାଇବା ଖରଚ ପାଇବା ଲୋକଠାରୁ ଆଦାୟ କରୁଥିଲେ । ପୂର୍ବେ ଏହି ଖରଚ ଦୂରତା ଅନୁସାରେ କମ୍ ବେଶୀ ହେଉଥିଲା । କିନ୍ତୁ ତା ପରେ ଇଂଲଣ୍ଡରେ ଯେ କୌଣସି ଜାଗାକୁ ଚିଠି ପଠାଇବା ପାଇଁ ଖରଚ ଏକପେନି (ପ୍ରାୟ ଛଅ ପଇସା) କରିଦିଆଗଲା । ତହୁଁ ବହୁତ ଲୋକ ଚିଠି ପଠାଇ ପାରିଲେ । ଏହି ପଇସା ସୁବିଧାରେ ଆଦାୟ କରିବା ପାଇଁ ଡାକ ଟିକଟ ଚଳିଲା । କ୍ରମେ ପୃଥିବୀର ସବୁ ଦେଶରେ ଏହିପରି ଡାକ ଟିକଟର ବ୍ୟବସ୍ଥା ହେଲା । ଭାରତରେ ଇଂରେଜ-ମାନେ ଡାକ ବିଭାଗ ବସାଇ ସେହିପରି ଚଳାଇଲେ ।

ଯେତେବେଳେ ରେଳଗାଡ଼ି ଚାଲିଲା, ସେତେବେଳେ ଚିଠି ନେବା ଆଣିବା ଆହୁରି ସହଜ ହେଲା । ଦୂର ସ୍ଥାନମାନଙ୍କୁ ମଧ୍ୟ ଅଳ୍ପସମୟ ମଧ୍ୟରେ ଚିଠିପତ୍ର ଯିବା ଆସିବା କରିପାରିଲା । ଦିନକୁ ଦିନ ନୂଆ କଥା ବାହାରିଲା । ଉଡ଼ାଜାହାଜ ରେଳ ଗାଡ଼ିଠାରୁ ଆହୁରି ବେଗରେ ଯାଏ । ସେଥିରେ ଚିଠି ଯିବାରୁ ଖୁବ୍ ଚଞ୍ଚଳ ପହଞ୍ଚି ପାରିଲା । କିନ୍ତୁ ସବୁ ଜାଗାକୁ ଉଡ଼ାଜାହାଜ କିମ୍ବା ରେଳ ଗାଡ଼ି ଯାଏ ନାହିଁ । ତେଣୁ ଏବେ ସୁଦ୍ଧା କେତେ ଜାଗାକୁ ଚିଠି

ନେବାପାଇଁ ମୋଟର ଗାଡ଼ି, ଘୋଡ଼ା ପ୍ରଭୃତି ବ୍ୟବହାର କରାଯାଏ । କୌଣସି କୌଣସି ଜାଗାକୁ ଲୋକେ ଚିଠି ବୋହି ନଅନ୍ତି ।

ଡାକ ତାର ହେବାରୁ ଆହୁରି ସୁବିଧା ହେଲା । ଘଡ଼କ ଭିତରେ ଗୋଟିଏ ଜାଗାରୁ ଅନ୍ୟ ଯେ କୌଣସି ଜାଗାର ଖବର ପଠାଇ ହେଲା । ଯେଉଁଠାରୁ ଖବର ପଠାଯାଏ ସେଠାରେ ଜଣେ କର୍ମଚାରୀ ତାର ଯନ୍ତ୍ରରେ କେତେକ ଶବ୍ଦ କରନ୍ତି । ସେହି ଶବ୍ଦ ତାର ଲାଗିଥିବା ଦୂରସ୍ଥାନରେ ଶୁଣାଯାଏ । ସେଠାରେ କର୍ମଚାରୀ ସେହି ଶବ୍ଦରୁ ଖବରଟି ବୁଝିପାରନ୍ତି । ତାଙ୍କୁ ଲେଖି ଯେ ଖବର ପାଇବାର କଥା, ତା ପାଖକୁ ପଠାଇ ଦଅନ୍ତି ।



କେବଳ ଯେ ଗୋଟିଏ ଦେଶ ଭିତରେ ଖବର ଦିଆନିଆ ହେଉଛି ତା ନୁହେଁ । ପୃଥିବୀର ଯେ କୌଣସି ଜାଗାକୁ ଇଚ୍ଛା

କଲେ ଚିଠି ପଠାଇ ଦେବ କିମ୍ବା ତାରଦ୍ୱାରା ଖବର ପଠାଇ ଦେବେ । ଦୂର ଦେଶମାନଙ୍କୁ ଖବର ପଠାଇବା ପାଇଁ ସମୁଦ୍ର ଭିତରେ ମଧ୍ୟ ତାର ଯାଇଛି । ଏଠାରୁ ବିଲାତକୁ ମଧ୍ୟ ତାରଦ୍ୱାରା ଖବର ପଠା-ଯାଉଛି ।

ତୁମେ ଜାଣିଥିବ ଯେ ଗତ ୧୯୩୯ ମସିହାଠାରୁ ୧୯୪୫ ମସିହା ଯାଏ ପୃଥିବୀରେ ଗୋଟିଏ ଭୟଙ୍କର ଯୁଦ୍ଧ ଲାଗିଥିଲା । ସେଥିରେ ଉଡ଼ାଜାହାଜର ବ୍ୟବହାର ଖୁବ୍ ବେଶୀ ଥିଲା । ଯୁଦ୍ଧର ଖବର ଜାଣିବା ପାଇଁ ବହୁତ ଚିଠିର ନେବା ଆଣିବା ଚାଲିଥିଲା । ଇଂଲଣ୍ଡରୁ ପ୍ରତ୍ୟହ ଲକ୍ଷ ଲକ୍ଷ ଚିଠି ବାହାରକୁ ଯାଉଥିଲା ଓ ଆସୁ-ଥିଲା । ଏତେ ଚିଠି ନେବା ଆଣିବା ପାଇଁ ବହୁତ ଉଡ଼ାଜାହାଜ ଦରକାର । ତେଣୁ ଗୋଟାଏ ଉପାୟ କରାଗଲା । ଚିଠିକୁ ଖୋଳ ଭିତରେ ବନ୍ଦକରି ଉଡ଼ାଜାହାଜରେ ନ ପଠାଇ ଚିଠିର ଫଟୋ ପଠାଗଲା । ଏହି ଫଟୋଟି ଖୁବ୍ ଛୋଟ କରାଯାଉଥାଏ । ଖଣ୍ଡେ ଚିଠିର ହାରାହାରି ଓଜନ ହେବ ବାରଗ୍ରାମ ହୁଏ; ଲକ୍ଷେ ଚିଠିର ଓଜନ ହେବ ୧୨୦୦ କିଲୋଗ୍ରାମ । ମାତ୍ର ସେଗୁଡ଼ିକର ଫଟୋ ଗୁଡ଼ିକର ଓଜନ ଚାଳିଶି କିଲୋଗ୍ରାମରୁ ମଧ୍ୟ କମ । ଏହି ଫଟୋଗୁଡ଼ିକ ଉଡ଼ା-ଜାହାଜରେ ପଠାଗଲା । ଏହାକୁ ପଠାଇବା ପାଇଁ ଗୋଟିଏ ଉଡ଼ାଜାହାଜ ଯଥେଷ୍ଟ । ଠିକ୍ ଜାଗାରେ ପହଞ୍ଚିବା ପରେ ଫଟୋ-ଗୁଡ଼ିକୁ ଆହୁରି ବଡ଼ ଆକାରରେ ଫଟୋ କରାଯାଇ ପାଇବା ଲୋକଙ୍କୁ ଦିଆଗଲା । ଏହିପରି ଚିଠିକୁ ଏୟାରଗ୍ରାଫ୍ କହନ୍ତି । ଉଡ଼ାଜାହାଜରେ ଚିଠି ପଠାଇବା ପାଇଁ ଟିକିଏ ବେଶୀ ଖରଚ ଲାଗେ । ଏୟାରଗ୍ରାଫ୍‌ରେ ତହିଁରୁ କିଛି ବେଶୀ ଲାଗେ । ମାତ୍ର ସୁବିଧା ଦେଖିଲା ବେଳକୁ ଖରଚ୍ଟା କିଛି ନୁହେଁ ।

ଏ ତ ଗଲା ଆପଣା ଅମଳ ଭିତରେ ଖବର ନେବା ଆଣିବା କଥା । ଦୁନିଆଁର ଅନେକ ଖବର ସମସ୍ତେ ଜାଣିବାକୁ ଚାହାନ୍ତି ।

ତାହା ଜଣାଯାଏ ଖବର କାଗଜରୁ । ପ୍ରତିଦିନ ଖବର କାଗଜ ପଢ଼ି ପୃଥିବୀର ହାଲଚାଲ ଜାଣିବାକୁ ସମସ୍ତଙ୍କ ମନ ଇଚ୍ଛାକ ହେଉଥାଏ । ଆମେ ଦଶପଇସା ଦେଇ ଖଣ୍ଡେ ଖବର୍ କାଗଜ କିଣିନେଲୁ । ତାକୁ ପଢ଼ି ଅନେକ ଖବର ପାଇଲୁଁ ; ଆମ ଦେଶର ଖବର, ବିଦେଶର ଖବର । କିନ୍ତୁ ଏତେସବୁ ଖବର କିପରି ଖବର କାଗଜ ଅଫିସକୁ ଆସି ଛପା ହେଲା ସେ କଥା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼ିବ ।

ପୃଥିବୀର ସବୁ ଅଞ୍ଚଳରେ ଖବର ପଠାଇବା ପାଇଁ ଲୋକ ଥାନ୍ତି । ସେମାନେ ସୁବିଧା ଅନୁସାରେ କିଏ ଚିଠି ଲେଖି; କିଏ ଟେଲିଗ୍ରାମ କରି ଖବର କାଗଜ ଅଫିସକୁ ପଠାନ୍ତି । ତାହା ଖବର କାଗଜରେ ଛପାଯାଏ । କିନ୍ତୁ ଖବର ଯୋଗାଇବା ପାଇଁ କେତେକ କମ୍ପାନୀ ଅଛନ୍ତି । ସେଇମାନେହିଁ ଅଧିକାଂଶ ଖବର ଯୋଗାନ୍ତି । ଗୋଟିଏ ଗୋଟିଏ କମ୍ପାନୀ ସାରା ପୃଥିବୀର ଖବର ଦେଉଅଛନ୍ତି । ଖବର କିପରି ଅଳ୍ପ ସମୟ ଭିତରେ ସବୁ ଖବର କାଗଜ ପାଇ ପାରିବେ ସେଥିପାଇଁ ଏକ ପ୍ରକାର ଯନ୍ତ୍ର ଅଛି । ତାକୁ କହନ୍ତି ଟେଲି-ପ୍ରିଣ୍ଟର । ପ୍ରତି ଖବର କାଗଜ ଅଫିସରେ ଗୋଟିଏ ଲେଖାଏଁ ଏହି ଯନ୍ତ୍ର ଥାଏ । କମ୍ପାନୀ ଯେଉଁ ସମ୍ବାଦ ପଠାଏ, ତାହା ଆପେ ଆପେ ଏହି ଯନ୍ତ୍ରରେ ଛପି ହୋଇଯାଏ, ତାକୁ ନେଇ ଖବର କାଗଜରେ ଛାପି ଦେବାକୁ ହୁଏ । ଏହା କେଡ଼େ ବଡ଼ ସୁବିଧା । ଆଜି ବିଲାତର ପାର୍ଲିଆମେଣ୍ଟରେ କିଏ କଅଣ କହିଲା, ଜାପାନର କେଉଁଠାରେ ଭୂମିକମ୍ପ ହେଲା, ଋଷିଆର କେଉଁଠି ବୋମା ଫୁଟିଲା, ସେ ଖବର ଆମେ ହଜାର ହଜାର କିଲୋମିଟର ଦୂରରେ ରହି ଦିନକ ଭିତରେ ପାଇ ପାରୁଛୁ । ଖାଲି ଏତିକି ନୁହେଁ, ନାନା ଘଟଣାର ଛବି ମଧ୍ୟ ଯନ୍ତ୍ରଦ୍ୱାରା ପଠାଯାଇ ପାରୁଛି । ଆମେ ଖବର ଜାଣିବା ସଙ୍ଗେ ସଙ୍ଗେ ଘଟଣାମାନଙ୍କର ଛବି ମଧ୍ୟ ଦେଖି ପାରୁଛୁ ।

ସମସ୍ତେ ଖବରକାଗଜ କିଣି ପାରନ୍ତି ନାହିଁ କି ସମସ୍ତେ ପଢ଼ି ପାରନ୍ତି ନାହିଁ । ରେଡ଼ିଓ ଦ୍ୱାରା ପ୍ରତିଦିନ ଦୁଇ ତିନଥର ଖବର ଜଣାଇ ଦିଆଯାଇଥାଏ । ଯେଉଁଠାରେ ରେଡ଼ିଓ ଅଛି, ସେଠାକୁ ଗଲେ ତୁମେ ପ୍ରତିଦିନର ଟଟକା ଖବର ଶୁଣିବାକୁ ପାଇବ ।



ରେଡ଼ିଓ ଏକ ଅଦ୍ଭୁତ ଯନ୍ତ୍ର । ଯେତେ ଦୂରରେ ଥିଲେ ମଧ୍ୟ ମୁହୂର୍ତ୍ତକ ମଧ୍ୟରେ ମଣିଷର କଥା ଶୁଣି ହେବ । ସତେ ଯେପରି କିଏ ତମ ପାଖରେ କଥା କହୁଛି । ସେ ପ୍ରକୃତରେ ତୁମଠାରୁ ହଜାର ହଜାର ମାଇଲ୍ ଦୂରରେ ଥାଇପାରେ ।

ଆଜକାଲି ଦୁନିଆଁର ଖବର ଜାଣିବା ପାଇଁ ଯେତେ ପ୍ରକାର ସୁବିଧା ହେଲଣି ଆମ ବାପ ଅଜାଙ୍କ ଅମଳରେ ତାର ଶହେ ଭାଗରୁ ଭାଗେ ନ ଥିଲା । ଆମ ନାତି ଅଣନାତିଙ୍କ ଅମଳକୁ ଆହୁରି କେତେ କେତେ ନୂଆ ଉପାୟ ବାହାରିବ ତାହା କିଏ କହିବ ?

୯

# ମଣିଷ ପାଖେ ଏଭରେଷ୍ଟ ହାରିଲା

ପିଲାମାନେ ବେଳେ‌ବେଳେ ଘରୁ ପଳାଇ ଯାଇ ଏଣେତେଣେ ବୁଲନ୍ତି । ଘର ପାଖରୁ ଦୂରକୁ ପଳେଇବା ଯେପରି ତାଙ୍କର ଅଭ୍ୟାସ । ଏଣେ ବାପମାଆ ପିଲାକୁ ଖୋଜି ଖୋଜି ଅଥୟ । ବାପ ମାଆଙ୍କୁ ହଇରାଣ କରିବାକୁ ଯେ ପିଲାଏ ଘରୁ ଦୂରକୁ ପଳାନ୍ତି ତା' ନୁହେଁ । ଅସଲ କଥା ହେଉଛି, ନୂଆ ନୂଆ କଥା ଦେଖିବା ପାଇଁ ତାଙ୍କ ମନ ଉଚ୍ଛନ୍ନ ହେଉଥାଏ । ଗାଁ ମୁଣ୍ଡରେ କ'ଣ ଅଛି, ସେ ପଡ଼ିଆ ଆରପାଖେ କ'ଣ ଅଛି, ଏହିପରି ନାନାସ୍ଥାନ ଦେଖି ଜାଣିବାକୁ ସେମାନଙ୍କର ମନ ହୁଏ । ସେଥିପାଇଁ ସେମାନେ ଘରଗୁଡ଼ି ପଳେଇ ଯାଇଥାନ୍ତି ।

ନୂଆ ଜିନିଷ ଦେଖିବା ପାଇଁ ନୂଆ କଥା ଜାଣିବା ପାଇଁ ପିଲାଙ୍କ ମନ ଛଟପଟ ହୁଏ । ବଡ଼ ମଣିଷଙ୍କ ମନ ମଧ୍ୟ ସେହିପରି ହୁଏ । ତେବେ ଯାହାଙ୍କ ମନରେ ନୂଆ ଜାଗା ଦେଖିବା ପାଇଁ ପ୍ରବଳ ଆଗ୍ରହ, ସେମାନେ ଆଉ ସବୁକଥା ଭୁଲିଯାନ୍ତି । ଯେତେ ବିପଦ ଆସୁ ପଛକେ ସେଥିକି ଚିନ୍ତା ନ ଥାଏ । ସେମାନେ ସେ ଜାଗାକୁ ଯିବା ସକାଶେ ଜୀବନକୁ ପାଣି ଛଡ଼ାଇ ଦେଇଥାନ୍ତି ।

ଗୋଟାଏ ନୂଆକଥା କରିବା ପାଇଁ ନିଜ ପ୍ରାଣକୁ ଏପରି ବିପଦରେ ପକାଇବାକୁ ସମସ୍ତେ ଭଲ ମନେ କରି ନପାରନ୍ତି, କିନ୍ତୁ ପୃଥିବୀରେ ଯେତେ ଯେତେ ନୂଆକଥା ବାହାରିଛି ସେ ସବୁ ହୋଇଛି ଏଇଭଳି ଲୋକଙ୍କଦ୍ୱାରା । ଆଜି ପୃଥିବୀରେ ଏପରି ସ୍ଥାନ ଖୁବ୍ କମ୍ ଥିବ, ଯେଉଁଠାରେ କି ମଣିଷର ପାଦ ପଡ଼ି ନ ଥିବ । ଭୟଙ୍କର ମରୁଭୂମି, ଯେଉଁଠାରେ କି ଘାସଟିଏ ସୁଦ୍ଧା

ଦେଖିବାକୁ ସ୍ୱପ୍ନ, ପିଇବାକୁ ଟୋପାଏ ପାଣି ନାହିଁ, ଗ୍ରୀଷ୍ମ ଆଡେ ବାଲି ଧୂ ଧୂ କରୁଛି, ସେଠାକୁ ମଣିଷ ଯାଉଛି । ମେରୁପ୍ରଦେଶ ଯେଉଁଠାରେ କି ପାଣି ବହୁବେଳେ ବରଫ ହୋଇଥାଏ, ଗଛ ବୃକ୍ଷ ଦେଖାଯାଏନି, ଶୀତରେ ପ୍ରାଣ ରଖିବା ଅସମ୍ଭବ ମନେହୁଏ, ସେଠାକୁ ବି ମଣିଷ ଯାଉଛି । ଆଫ୍ରିକାର ଭୟଙ୍କର ଜଙ୍ଗଲ ସାପ, ହାତୀ, ସିଂହରେ ପୂର୍ଣ୍ଣ । ତା'କୁ ମଣିଷ ଦେଖିବାକୁ ଯାଉଛି । କାହିଁକି ? ଏ ସବୁ ଜାଗାରୁ ଯେ ସେ କିଛି ଧନ ଅର୍ଜିଛି, ତା ନୁହେଁ । ପାଉଛି କେବଳ ସେ ସବୁ ଜାଗା ବିଷୟରେ ନୂଆ ଜ୍ଞାନ ।

ମନୁଷ୍ୟ କିନ୍ତୁ ଗୋଟିଏ ସ୍ଥାନ ଉପରକୁ ଯାଇ ନ ପାରି ବଡ଼ ଲଜ୍ଜିତ ହେଉଥିଲା । ସେଇଟି ହେଉଛି—ଭାରତର ଉତ୍ତରରେ ଥିବା ହିମାଳୟ ପର୍ବତର ଉଚ୍ଚତମ ଶୃଙ୍ଗ ଏଭରେଷ୍ଟ । ସାରା ପୃଥିବୀରେ ତାଠାରୁ ବଳି ଉଚ୍ଚ ପର୍ବତ ଶୃଙ୍ଗ ନାହିଁ । ଏହା ହେଉଛି ୨୯୦୨୮ ଫୁଟ ଉଚ୍ଚ ଅର୍ଥାତ୍ ପ୍ରାୟ ନଅ କିଲୋମିଟର ।

ଯେତେବେଳେ ମନୁଷ୍ୟ ଗୋଟି ଗୋଟି କରି ଅଜଣା ସ୍ଥାନକୁ ଯାଇ ତା' କଥା ପୃଥିବୀର ଲୋକଙ୍କୁ ଶୁଣାଉଥାଏ, ସେତେବେଳେ ହିମାଳୟ ମନେ ମନେ କହୁଥାଏ—ହଁ, ତୋ ବଳ ମୋତେ ଜଣାଅଛି; ଦେଖି, ମୋ ଉପରକୁ ଆସ ତ !

ନୂଆ ଜାଗାକୁ ଯିବାପାଇଁ ଯେଉଁମାନଙ୍କର ଖୁବ୍ ଆଗ୍ରହ, ସେମାନେ କହୁଥିଲେ—ପୃଥିବୀ ଭିତରେ ସବୁଠାରୁ ଉଚ୍ଚ ଏଇ ଏଭରେଷ୍ଟକୁ ଜୟ ନ କଲେ ହେବ ନାହିଁ । ତା ମୁଣ୍ଡ ଉପରେ ଆମେ ପାଦ ପକାଇବୁ ।

ଲୋକେ ବାହାରିଲେ—ଏଭରେଷ୍ଟର ମୁଣ୍ଡ ଛୁଇଁବାକୁ । ଦଳକ ପରେ ଦଳ ଗଲେ ଏଭରେଷ୍ଟ ଉପରକୁ ଯିବାପାଇଁ । କିନ୍ତୁ

କେହି ପାରିଲେ ନାହିଁ । ଏଭରେଷ୍ଟ ମୁଣ୍ଡ ଟେକି ରହିଲା; ମଣିଷର ଚେଷ୍ଟାକୁ ହସରେ ଉଡ଼ାଇଦେଲା ।

ତମମାନଙ୍କ ଭିତରୁ କେହି କୃଷ୍ଣପୁରର ଘଣ୍ଟଶିଳା ପାହାଡ଼ ଉପରକୁ ଯାଇଥିବ, କେହି ଭୁବନେଶ୍ୱରର ଖଣ୍ଡଗିରି ବା ଧଉଳ-ଗିରି ଉପରକୁ ଯାଇଥିବ, ଆଉ କେହି ଅବା ଢେଙ୍କାନାଳର କପିଳାସ ଉପରକୁ ଚଢ଼ିଥିବ । ତୁମେ ମନେ କରୁଥିବ—ହେଲା ବା ଏଭରେଷ୍ଟ ପାହାଡ଼ ଖୁବ୍ ଉଚ୍ଚ । ଉପରକୁ ଉପରକୁ ଚଢ଼ିଗଲେ କଷ୍ଟେ ଅଗରେ ପହଞ୍ଚିଯିବ । ଏହା କରିବାରେ ଏତେ ବଡ଼ କଥା କଅଣ ।

ମାତ୍ର ପ୍ରକୃତରେ କଥାଟା କହିବା ଯେତେ ସହଜ, କରିବା ସେତେ ସହଜ ନୁହେଁ । ପ୍ରଥମ କଥା—ହିମାଳୟ ପର୍ବତ ଉପର ଅଞ୍ଚଳରେ ବଡ଼ ଶୀତ । ତାକୁ ସହିବା ସହଜ ନୁହେଁ । ଦ୍ୱିତୀୟରେ—ସେଠାରେ ଯେଉଁ ବରଫ ଜମିଥାଏ ତା ଉପରେ ଚାଲିଲାବେଳକୁ ଗୋଡ଼ ଖସିଯାଏ । ଥରେ ଖସି ପଡ଼ିଲେ ଗଡ଼ି ଗଡ଼ି କେଉଁଠି ମାଟି ପିଣ୍ଡୁଳାପରି ପଡ଼ିବ ଠିକଣା ନାହିଁ । ଏଥିରେ ବହୁସମୟ ଗଳାପରେ ହାତଗୋଡ଼ ଛିଡ଼ିଯାଏ । ତୃତୀୟରେ—ବେଳେ ବେଳେ ସେଠାରେ ବରଫ ଝଡ଼ ହୁଏ । ସେଥିରେ ପଡ଼ିଲେ ଘଡ଼ିକ ଭିତରେ ମଣିଷର କଥା ଶେଷ । କେଉଁଠି ବରଫ ଭିତରେ ପୋତିହୋଇ ପଡ଼ିବ ଠିକ୍ ନାହିଁ । ଚତୁର୍ଥରେ—ହିମାଳୟ ଉପରକୁ ଉଠିବାପାଇଁ ରାସ୍ତା ନାହିଁ । ଯେ ଯିବ, ସେ ଆପଣା ରାସ୍ତା ତିଆରି କରି କରି ଯିବ । ପଞ୍ଚମରେ—ଶୃଙ୍ଗ ଉପରକୁ ଯିବାପାଏ ଅନେକ ସମୟ ଲାଗିବ । ସେଥିପାଇଁ ଯେ ଯିବ ସେ ଆପଣାର ଚଳିବାପାଇଁ ଜିନିଷପତ୍ର ନେଇଯିବ । ସେଠାରେ ଦୋକାନ ବଜାର ନାହିଁ ଯେ ଦରକାରବେଳେ କିଣି ପକାଇବ । ଆପେ ଚାଲିବା ତ କଷ୍ଟ, ସେଥିରେ ଜିନିଷଗୁଡ଼ାଏ ବୋହିବାକୁ ହୁଏ

ବୋଝ ଉପରେ ନଳଚା ବନ୍ଧାପରି । ଏଣ୍ଟପରି ଅନେକ ଅସୁବିଧା ଅଛି । ମାତ୍ର ସବୁଠାରୁ ବଡ଼ ଅସୁବିଧା କଥା କୁହା ଯାଇନାହିଁ । ଏଭରେଷ୍ଟର କହୁଦୂର ଉପରକୁ ଉଠିବା ପରେ ସେଠାରେ ଯେଉଁ ପବନ ଅଛି, ତାକୁ ନିଶ୍ୱାସରେ ନେଇ ହେବ ନାହିଁ । ଯିବାଲ ଦେଖି— ନିଶ୍ୱାସ ନ ନେଇ ମଣିଷ ବଞ୍ଚିବ କପରି ଭଲା ?

ଏବେ ବୁଝୁଥିବ ଯେ କାହିଁକି ଏଭରେଷ୍ଟ ଶୃଙ୍ଗ ଉପରକୁ ଯିବା ଏଡ଼େ କଠିନ ।

୧୯୫୩ ମସିହା ପୂର୍ବରୁ ପ୍ରାୟ ୩୦ ବର୍ଷ ଭିତରେ ଅନେକ ଦଳ ଲୋକ ଏଭରେଷ୍ଟ ଉପରକୁ ଉଠିବାକୁ ଚେଷ୍ଟା କରିଥିଲେ । ସେଥିରେ ଲକ୍ଷ ଲକ୍ଷ ଟଙ୍କା ଖରଚ ହୋଇଥିଲା ଓ କେତେ ଲୋକ ମଧ୍ୟ ପ୍ରାଣ ହରାଇଥିଲେ ।

ଏଭରେଷ୍ଟ ପର୍ବତର ମୁଣ୍ଡ ଟେକି ରହିଥିଲା । ମନୁଷ୍ୟର ଚେଷ୍ଟା ବିଫଳ ହେଲା, କିନ୍ତୁ ମନୁଷ୍ୟ ଯଦି ଅସମ୍ଭବକୁ ସମ୍ଭବ କରି ନ ପାରିଲା ତେବେ ସେ ପ୍ରାଣୀମାନଙ୍କ ଭିତରେ ଶ୍ରେଷ୍ଠ ହେବ କାହିଁକି ? ଥରେ ଚେଷ୍ଟାକରି ବିଫଳ ହେଲେ ସେ ପୁଣି ଚେଷ୍ଟା କରେ । ବାରମ୍ବାର ଚେଷ୍ଟା ଫଳରେ ଦିନେ ତାର ଲକ୍ଷ୍ୟ ସିଦ୍ଧ ହୁଏ ।

ଦିନେ ଏଭରେଷ୍ଟକୁ ହାରିବାକୁ ପଡ଼ିଲା । ମଣିଷ ତା ମୁଣ୍ଡରେ ପାଦ ଦେଲା ।

୧୯୫୩ ମସିହାରେ ଦଳେ ଲୋକ ଏଭରେଷ୍ଟ ଉପରକୁ ଯିବାକୁ ବାହାରିଲେ । ସେଠାରେ ଭୀଷଣ ଶୀତ ନ ବାଧିବା ପାଇଁ ଗରମ ପୋଷାକ, ବରଫ ଉପରେ ପାଦ ନ ଖସିବା ଭଳି ତିଆରି ହୋଇଥିବା ଯୋତା, ବରଫ ଉପରେ ବାଟ ତିଆରି କରିବା ପାଇଁ ହତିଆର, ଫଟୋଗ୍ରାଫ ଯନ୍ତ୍ର ପ୍ରଭୃତି ଜିନିଷ ସେମାନଙ୍କୁ ନେବାକୁ

ହୋଇଥିଲା । ଉପର ଅଂଶର ବାୟୁରେ ଅକ୍ସିଜେନ୍ ନ ଥିବାରୁ ସେଠାରେ ଶ୍ୱାସ ନେବାପାଇଁ ଅକ୍ସିଜେନ୍ ନଳ ସେମାନେ



ନେଇଥିଲେ । ଦଳଟିରେ ଆରୋହଣକାରୀମାନଙ୍କ ଛଡ଼ା ଆବଶ୍ୟକ ଜିନଷ ବୋହିବା ପାଇଁ ଅନେକ କୁଲି ଓ ମାଲବାହକ ମଧ୍ୟ ଥିଲେ । କେତେକ ଦୂର ଯିବାପରେ ସେମାନେ ଗୋଟିଏ ନେଖାଏଁ ଜାଗାରେ ତମ୍ବୁ ପକାଇ ରହୁଥିଲେ ଓ ସେଠାରୁ ଅନ୍ଧର କିଛି ଉଚ୍ଚକୁ ଯିବାକୁ ବନ୍ଦୋବସ୍ତ କରୁଥିଲେ । ଆରୋହୀମାନେ ଦଉଡ଼ିରେ ପରସ୍ପର ଛନ୍ଦାଛନ୍ଦି ହୋଇଥିବାରୁ ଉପରକୁ ଉଠିଲାବେଳେ କାହାରି କିଛି ଅସୁବିଧା ହେଲେ ଦଉଡ଼ି ଟାଣି ପରସ୍ପରକୁ ସାହାଯ୍ୟ କରି ପାରୁଥିଲେ ।

( ତେନ୍‌ଜିଂ ନୋର୍କେ )

ଏହି ଦଳଟିର ନେତା ଥିଲେ କର୍ଣ୍ଣେଲ୍ ହଣ୍ଟ୍ ବୋଲି ଜଣେ ଇଂରେଜ । ତାଙ୍କ ସଙ୍ଗରେ ନ୍ୟୁଜିଲାଣ୍ଡର ଏଡ଼ମଣ୍ଡ୍ ହିଲାରି ଓ ଭାରତର ଶେର୍ପା ତେନଜିଂ ନୋର୍କେ ମଧ୍ୟ ଥିଲେ । ସେମାନେ ଶେଷ ତମ୍ବୁରେ ପହଞ୍ଚି ଦେଖିଲେ ଯେ ଏଭରେଷ୍ଟର ଅବଶିଷ୍ଟ ଅଂଶତକ ଚଢ଼ିବା ଏକପ୍ରକାର ଅସାଧ୍ୟ । କିନ୍ତୁ ସେମାନେ ଆଶା ଛାଡ଼ିଲେ ନାହିଁ । ତେନଜିଂ ଓ ହିଲାରି ମଇ ମାସ ୨୯ ତାରିଖ ଦିନ ସକାଳୁ ଶେଷ ତମ୍ବୁରୁ ବାହାରିଲେ । ଏଠାରେ ଶୃଙ୍ଗଟି ବଡ଼ ଖାଡ଼ା । ମାତ୍ର

ବରଫ କଠିନ ଥିବାରୁ ସେମାନେ କୁରାଢ଼ିରେ ପାହାଚ କାଟି କାଟି ଧୀରେ ଧୀରେ ଉପରକୁ ଉଠିଲେ । କିଛୁ ଦୂର ଯିବାପରେ ତେନଜିଂ ହଠାତ୍ ଅଚେତ ହୋଇ ପଡ଼ିଲେ । ହିଲାରୀ ବହୁ-କଷ୍ଟରେ ତାଙ୍କ ପାଖକୁ ଯାଇ ଦେଖିଲେ ଯେ ତାଙ୍କର ଅକ୍‌ସିଜେନ୍ ନଳର ମୁହଁ ବରଫରେ ବନ୍ଦହୋଇ ଯାଇଥିବାରୁ ସେ ନିଶ୍ୱାସ ନେଇ ନପାରି ଏପରି ଅଚେତ ହୋଇ ଯାଇଅଛନ୍ତି । ସେ ଖୁବ୍ ଶୀଘ୍ର ନଳର ମୁହଁ ସଫାକରି ଦେଇ ତାଙ୍କ ନାକପାଖରେ



( ଏଭରେଷ୍ଟ ଆରୋହଣ )

ଦେବାରୁ ତାଙ୍କର ଚେତା ଆସିଲା ଓ ସେ ପୁଣି ଯିବାକୁ ସମର୍ଥ ହେଲେ । ଏହାପରେ ପଡ଼ିଲା ପ୍ରାୟ ବାର ମିଟର ଉଚ୍ଚ ଗୋଟିଏ ତୁଷାର

ସ୍ତୂପ । ସେଇଟି ଠିକ୍ ଖଣ୍ଡହୋଇ ଠିଆ । ଏହା ଉପରକୁ କିଏ କପରି ଚଢ଼ିବ ? ଖୁବ୍ ନିରେଖି ନିରେଖି ସେମାନେ ଦେଖିଲେ ଯେ ସେଠା ପାହାଡ଼ରେ ଗୋଟିଏ ଫାଙ୍କା ଜାଗା ଉପରଯାଏ ଅଛି । ଫାଙ୍କଟି ଅତି ସରୁ । ଦ'ପାଖରେ ତୁଷାରକୁ ହାଣି ପାହାଚ ତିଆରି କରି କରି ସେମାନେ ଉଠିଲେ । ହାତରେ, ପିଠିରେ, କାନ୍ଧରେ ମଧ୍ୟ ଭରଦେବାକୁ ହେଉଥାଏ । ଏହିପରି ସେ କଠିନ ଅଂଶଟି ପାର ହୋଇଯିବା ପରେ ଗୋଟିଏ ଉପରିଆ ଅଂଶ ପଡ଼ିଲା । ଏଥିରେ ପାହାଚ ହାଣି ସେମାନେ ଚାଲିଲେ । ପାହୁଣ୍ଡିକେ ଦୁଇ ବା ତିନ ସେକେଣ୍ଡରୁ ବେଶୀ ଯାଇ ହେଉନଥାଏ । ଏଣେ ଅକ୍ସିଜେନ ନଳରୁ ଅକ୍ସିଜେନ୍ ସରି ଆସୁଥାଏ । ସେତକ ସରିଗଲେ ସେମାନେ ଅଣନିଶ୍ୱାସୀ ହୋଇ ମରିଯିବା ସୁନିଶ୍ଚିତ । ଏହିପରି କଷ୍ଟରେ ଯାଇ ସେମାନେ ଗୋଟିଏ ଜାଗାରେ ପହଞ୍ଚିଲେ । ଜାଗାଟି ସମତଳ । ସେମାନେ ଚାରିଆଡ଼େ ପରୀକ୍ଷା କରି ଦେଖିଲେ ଯେ ଆଉ କୌଣସି ଶୃଙ୍ଗ ତା ଉପରକୁ ନାହିଁ । ତେଣୁ ସେମାନେ ଏଭରେଷ୍ଟ ଶିଖରରେ ପହଞ୍ଚିବା ନିଶ୍ଚିତ ରୂପେ ଜଣାଗଲା । ଖୁସିରେ ପାଗଳ ହୋଇ ଦୁହେଁଯାକ ଦୁଃଖ କଷ୍ଟ ଭୁଲିଗଲେ । ଆନନ୍ଦରେ ଦୁହେଁ ପରସ୍ପରକୁ କୁଣ୍ଢାଇ ପକାଇଲେ । ଏଭରେଷ୍ଟ ବିଜୟର ଚିହ୍ନସ୍ୱରୂପ ସେଠାରେ ଭାରତ, ନେପାଳ, ବ୍ରିଟେନ ଓ ଜାତିସଂଘର ପତାକା-ମାନ ଉଡ଼ାଇ ସେମାନେ ଶୀଘ୍ର ତଳକୁ ଫେରି ଆସିଲେ ।

ଅକ୍ସିଜେନ୍ ସରି ଆସୁଥିବାରୁ ସେମାନେ ସେଠାରେ ପ୍ରାୟ ପନ୍ଦରମିନିଟରୁ ଅଧିକ ସମୟ ରହିପାରି ନ ଥିଲେ ।

ତେନ୍‌ଜିଂ ଓ ହିଲାରୀ ଦୁଃସାଧ୍ୟ କାମ କରି ଆଜି ଜଗତରେ ଧନ୍ୟ । ଯେଉଁମାନେ ତାଙ୍କ ପୂର୍ବରୁ ଚେଷ୍ଟାକରି ବିଫଳ ହୋଇଥିଲେ

ବା ପ୍ରାଣ ଦେଇଥିଲେ, ସେମାନେ ମଧ୍ୟ ଧନ୍ୟ । ବହୁ କଷ୍ଟରେ ସେମାନେ ଯେଉଁ ଜ୍ଞାନ ଅର୍ଜିଥିଲେ ତାର ବଳରେ ଏବେ ଅସାଧ୍ୟ ସାଧନ ହେଲା ।

ଆମର ମହାଭାରତରେ ବର୍ଣ୍ଣନା ଅଛି ଯେ ପଞ୍ଚପାଣ୍ଡବ ଦ୍ରୌପଦୀଙ୍କୁ ଘେନ ହିମାଳୟ ବାଟେ ସ୍ୱର୍ଗକୁ ଯାଉଥିଲେ । ବାଟରେ ଦ୍ରୌପଦୀ, ଭୀମ, ଅର୍ଜୁନ, ନକୁଳ ଓ ସହଦେବ କିଛି ନା କିଛି ପାପକାର୍ଯ୍ୟ କରିଥିବାରୁ ପଡ଼ିଗଲେ । କେବଳ ଯୁଧିଷ୍ଠିର ପୁଣ୍ୟ-ବଳରୁ ହିମାଳୟ ଉପରକୁ ଉଠି ସ୍ୱର୍ଗରେ ପହଞ୍ଚିଥିଲେ । ପାଣ୍ଡବ-ମାନେ ଥିଲେ ଦ୍ୱାପରଯୁଗର ମଣିଷ, ହଜାର ହଜାର ବର୍ଷ ଆଗେ । ଏବେ ଆମର ଏଇ କଳିଯୁଗର ତେନ୍‌ଜିଂ ଓ ହିଲାରୀ ହିମାଳୟ ମୁଣ୍ଡ ଉପରେ ପାଦ ପକାଇ ଅଛନ୍ତି । ସେମାନେ ସ୍ୱର୍ଗରେ ନ ରହି ପୁଣି ଆମମାନଙ୍କ ଭିତରକୁ ଫେରି ଆସିଅଛନ୍ତି । ସେମାନଙ୍କୁ କଳିଯୁଗର ଯୁଧିଷ୍ଠିର କହିଲେ ଭୁଲ ହେବ କି ?

---

# ତୁମେ ଚନ୍ଦ୍ରକୁ ଯିବ କି ?

ପିଲାଟି ହେଲେ ଆମର ଜହ୍ନମାମୁଁ ସାଥିରେ ପରିଚୟ । ମାଆ-ମାନେ ପିଲାଙ୍କୁ କୋଳରେ ଧରି ଆକାଶର ଜହ୍ନମାମୁଁଙ୍କୁ ଦେଖାଇ କହନ୍ତି—

"ଆରେ ଜହ୍ନମାମୁଁ ଶରଧା ଶରୀ;
ମୋ କାହ୍ନୁ ହାତରେ ପଡ଼ରେ ଖସି ।"

ଜହ୍ନମାମୁଁ କାହ୍ନୁ ହାତରେ ଖସି ପଡ଼େ ନାହିଁ ସତ; କିନ୍ତୁ ସେ ଜହ୍ନମାମୁଁଙ୍କୁ ଦେଖି ଖୁସି ହୋଇଯାଏ ।

ଚନ୍ଦ୍ରର କରଣ କେତେ ଶୀତଳ ! ଚନ୍ଦ୍ର ଦେଖିବାକୁ କେତେ ସୁନ୍ଦର ! ସେ ଯଦି ଆମ ହାତକୁ ଖସି ପଡ଼ନ୍ତା କେତେ ମଜା ହୁଅନ୍ତା ନାହିଁ ?

ପୁନେଇଁ ଦିନ ଜହ୍ନ ଗୋଟିଏ ରୁପା ଥାଳୀପରି ଦିଶୁଥାଏ । ତା ମଝିରେ ଗୁଡ଼ିଏ କଳା ଦାଗ । ବୁଢ଼ାମାନଙ୍କଠାରୁ ଶୁଣିଥିବ ସେଇଟି ହେଉଛି ଗୋଟିଏ ଠେକୁଆ ।

ଆମର ପୁରାଣରେ ଅଛି ଯେ ଚନ୍ଦ୍ର ଗୋଟିଏ ଦେବତା । ସେ ସମୁଦ୍ର ଭିତରେ ଥିଲେ । ଥରେ ଦେବତା ଓ ଅସୁରମାନେ ସମୁଦ୍ରକୁ ମନ୍ଥିଲେ । ଦହି ମନ୍ଥିଲେ ଲହୁଣୀ ବାହାରିଲା ପରି ସମୁଦ୍ରରୁ ଅନେକ ଜିନିଷ ବାହାରିଲା । ସେଥି ମଧ୍ୟରେ ଲକ୍ଷ୍ମୀ ଓ ଚନ୍ଦ୍ର ମଧ୍ୟ ଥିଲେ । ଲକ୍ଷ୍ମୀଙ୍କୁ ବିଷ୍ଣୁ ବିଭା ହେଲେ । ଏକା ସମୁଦ୍ର ଗର୍ଭରୁ ଜନ୍ମ ହୋଇଥିବାରୁ ଚନ୍ଦ୍ର ହେଲେ ଲକ୍ଷ୍ମୀଙ୍କର ଭାଇ । ଲକ୍ଷ୍ମୀତ ସମସ୍ତଙ୍କର ମାଆ । ତେଣୁ ଚନ୍ଦ୍ର ହେଲେ ସମସ୍ତଙ୍କର ମାମୁଁ ।

ଏ ତ ଗଳ୍ପ ପୁରାଣ କଥା । ଏବେ ପୃଥିବୀର ଲୋକେ ଖୁବ୍ ଚତୁର ହେଲେଣି । ସେମାନେ ପୁରାଣ କଥା ମାନିବାକୁ ବଡ଼ ନୁହନ୍ତି । ନିଜ ଆଖିରେ ଯେତିକି ଦେଖିବେ, କାନରେ ଯେତିକି ଶୁଣିବେ, ସେତିକି ସତ ବୋଲି ସେମାନେ ମାନିବେ । ଦୂରର ଜିନିଷ ଦେଖିବା ପାଇଁ ଦୂରର କଥା ଶୁଣିବା ପାଇଁ ସେମାନେ ନାନା ଯନ୍ତ୍ର ବାହାର କରି-ଅଛନ୍ତି । ଟେଲିସ୍କୋପ ବୋଲି ଯେଉଁ ଯନ୍ତ୍ର ହୋଇଛି, ସେଥିରେ ଦୂରଜିନିଷ ପାଖରେ ଥିବାପରି ଜଣାଯିବ । ଖାଲି ଆଖିରେ ଆମେ ଯାହା ଦେଖି ପାରୁନାହିଁ ଏହାଦ୍ୱାରା ତାହା ଦେଖି ହେବ । ରାତିରେ ଆକାଶରେ ଆମ୍ଭେମାନେ ଅନେକ ତାରା ଦେଖୁଁ ମାତ୍ର ତାରାଙ୍କ ସଂଖ୍ୟା ତେର ବେଶୀ । ଟେଲିସ୍କୋପ ସାହାଯ୍ୟରେ ଦେଖିଲେ

ଆହୁରି ଅନେକ ତାରା ଦେଖାଯାନ୍ତି । ଆହୁରି ଶକ୍ତିଶାଳୀ ଟେଲିସ୍କୋପ ତିଆରି ହେଲେ ହୁଏତ ଆହୁରି ଅନେକ ତାରା ଦେଖା ପଡ଼ିବେ ।

ଯଦି ଟେଲିସ୍କୋପରେ ଜହ୍ନମାମୁଁଙ୍କୁ ଦେଖିବ, ତାହାହେଲେ ସେ ଆହୁରି ବଡ଼ ଦେଖାଯିବେ । ଏହି ଯନ୍ତ୍ର ସାହାଯ୍ୟରେ ପଣ୍ଡିତମାନେ ଚନ୍ଦ୍ର ବିଷୟରେ ଅନେକ କଥା ଜାଣିପାରିଅଛନ୍ତି । ସେ ସବୁ ଶୁଣିଲେ ତୁମେ ବିଶ୍ୱାସ କରିବ କି ନା ସନ୍ଦେହ ।

ସୂର୍ଯ୍ୟଙ୍କ ଚାରିପାଖେ ଯେଉଁ ଗ୍ରହମାନ ବୁଲୁଛନ୍ତି, ଆମ ପୃଥିବୀ ହେଉଛି ସେଥିରୁ ଗୋଟିଏ । ଚନ୍ଦ୍ର ପୁଣି ପୃଥିବୀ ଚାରିପାଖରେ ବୁଲୁଛି । ପଣ୍ଡିତମାନେ କହନ୍ତି ଯେ ପୃଥିବୀ ସୃଷ୍ଟି ବେଳେ ତାର ଚନ୍ଦ୍ର ନଥିଲା । ସେତେବେଳେ ପୃଥିବୀ ଥିଲା ଉତ୍ତପ୍ତ ବାଷ୍ପର ଗୋଟିଏ ପ୍ରକାଣ୍ଡ ପିଣ୍ଡୁଳା । ସେ ସୂର୍ଯ୍ୟ ଚାରିପାଖେ ବୁଲି ବୁଲି ତା ଦେହରୁ ଖଣ୍ଡେ ଛିଡ଼ିପଡ଼ି ପୃଥିବୀ ଚାରିପାଖେ ବୁଲିବାକୁ ଲାଗିଲା । ସେ ହେଲା ପୃଥିବୀର ଚନ୍ଦ୍ର । ଅନ୍ୟ କେତେକ ଗ୍ରହଙ୍କର ମଧ୍ୟ ସେହିପରି ଚନ୍ଦ୍ର ଅଛି ।

ତୁମେମାନେ ଚନ୍ଦ୍ରଗ୍ରହଣ କଥା ଶୁଣିଥିବ । ପୂର୍ଣ୍ଣିମା ତିଥିରେ ଚନ୍ଦ୍ର ପୂର୍ଣ୍ଣ ଗୋଲାକାର ଥାଏ । ଥରେ ଥରେ ପୂର୍ଣ୍ଣିମା ଦିନ କିଛି ସମୟପାଇଁ ଚନ୍ଦ୍ରର କେତେକ ଅଂଶ କଳାରଙ୍ଗରେ ବୁଡ଼ିଯାଏ । କେବେକେବେ ଚନ୍ଦ୍ର ଏକାବେଳେ ବୁଡ଼ିଯାନ୍ତି । ତାକୁ ଆମେ ଗ୍ରହଣ କହୁଁ । ଚନ୍ଦ୍ର ଗ୍ରହଣ ହେଲେ ଲୋକେ ଉପବାସ କରନ୍ତି । ଗ୍ରହଣ ପରେ ସ୍ନାନ କରନ୍ତି, ବ୍ରାହ୍ମଣ ଓ ଗରିବ ଲୋକଙ୍କୁ ଦାନ ଦିଅନ୍ତି । ଗ୍ରହଣ କାହିଁକି ହୁଏ ?

ଶୁଣାଯାଏ ଯେ ଦେବତା ଓ ଅସୁରମାନେ ସମୁଦ୍ର ମନ୍ଥିବାରୁ ସେଥିରୁ ଅନେକ ଜିନିଷ ବାହାରିଲା; ଚନ୍ଦ୍ର, ଲକ୍ଷ୍ମୀ, ଐରାବତ ହାତୀ

ଉଚ୍ଚୈଃଶ୍ରବା ଅଶ୍ୱ ପ୍ରଭୃତି । ଏସବୁ ଛଡ଼ା ସେଥିରୁ ଅମୃତ ମଧ୍ୟ ବାହାରିଲା । ତାକୁ ଖାଇଲେ ଆଉ ମରଣ ହେବନାହିଁ । ଦେବତା-ମାନେ ଅସୁରଙ୍କୁ ଭାଗ ନଦେଇ ଅମୃତ ଖାଇବାକୁ ବିଚାର କଲେ । ସେମାନେ ପଂକ୍ତିରେ ଖାଇବାକୁ ବସିଲାବେଳେ ରାହୁ ବୋଲି ଗୋଟାଏ ଅସୁର ତା ଭିତରେ ଲୁଚି ବସି ପଡ଼ିଲା । ଅମୃତ ପରଷା ଗଲା । ଚନ୍ଦ୍ର ଦେଖିଲେ ଯେ ଅସୁରଟାଏ ପଶି ଲୁଚି କରି ଅମୃତ ଖାଇଯାଉଛି । ଚନ୍ଦ୍ର ଇନ୍ଦ୍ରଙ୍କୁ ଆଖିଠାରି ଦେଲେ । ସେ ସାଥେ ସାଥେ ରାହୁର ଗଳାକୁ ହାଣିଦେଲେ । ମୁଣ୍ଡ ଗଣ୍ଡି ଅଲଗା ହୋଇଗଲା । ତା ପାଟିରେ ସେତେବେଳକୁ ଅମୃତ ଲାଗିଯାଇଥିଲା । ସେ ଦୁଇ ଖଣ୍ଡ ହୋଇଗଲା ସିନା, ମାତ୍ର ମଲା ନାହିଁ । ଚନ୍ଦ୍ର ରାହୁକୁ ଧରାପକାଇ ଦେଲା ବୋଲି ତାର ଚନ୍ଦ୍ରଙ୍କ ଉପରେ ରାଗ । ସେଥିପାଇଁ ସେ ବେଳେବେଳେ ଚନ୍ଦ୍ରଙ୍କୁ ଗିଳିଦିଏ, ମାତ୍ର ତାର ଗଣ୍ଡି ନ ଥିବାରୁ ଚନ୍ଦ୍ର ପୁଣି ବାହାରି ପଡ଼ନ୍ତି । ରାହୁ ଚନ୍ଦ୍ରକୁ ଗ୍ରାସକଲେ ଚନ୍ଦ୍ରଗ୍ରହଣ ହେଲା ବୋଲି ଆମେ କହୁଁ ।

ଏବେ ଅସଲ କଥାଟି ଶୁଣ । ଚନ୍ଦ୍ର ପୃଥିବୀ ଚାରିପାଖେ ବୁଲୁଥାଏ । ପୁଣି ପୃଥିବୀ ଚନ୍ଦ୍ରକୁ ସାଥିରେ ଘେନି ସୂର୍ଯ୍ୟ ଚାରିପାଖେ ବୁଲେ । ସୂର୍ଯ୍ୟର କିରଣ ଚନ୍ଦ୍ର ଉପରେ ପଡ଼ିବାରୁ ତାର ଆଲୁଅ ଆମକୁ ଦେଖାଯାଏ । ସବୁଦିନ ପୂରାପୂରି ସୂର୍ଯ୍ୟ କିରଣ ଚନ୍ଦ୍ର ଉପରେ ପଡ଼େ ନାହିଁ । ଯେଉଁ ଅଂଶରେ ପଡ଼େ ସେତିକି ଉଜ୍ଜ୍ୱଳ ଦେଖାଯାଏ । ସେଇ ଅନୁସାରେ ଆମର ତିଥିର ହିସାବ ହୁଏ ।

ପୃଥିବୀ ଓ ଚନ୍ଦ୍ର ଏହିପରି ବୁଲୁ ବୁଲୁ ବେଳେବେଳେ ପୃଥିବୀ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମଝିରେ ରହିଯାନ୍ତି । ସେତେବେଳେ ସୂର୍ଯ୍ୟଙ୍କର କିରଣ ଚନ୍ଦ୍ର ଉପରେ ପଡ଼ିପାରେ ନାହିଁ, ତେଣୁ ଚନ୍ଦ୍ର କଳା ସମସ୍ତ ଯାଏ ଦେଖାଯାନ୍ତି ନାହିଁ । ତାକୁଇ ଆମେ କହୁଁ ଚନ୍ଦ୍ରଗ୍ରହଣ । ( ଚିତ୍ରଦେଖ )

ବଜ୍ଞାନ ପଢ଼ିଲେ ଭଲରୂପେ ଜାଣିପାରିବ ଯେ ଚନ୍ଦ୍ର ଗ୍ରହଣ ଓ ସୂର୍ଯ୍ୟାପରାଗ କପରି ହୁଏ ।



( ଚନ୍ଦ୍ର ଗ୍ରହଣ )

ପୃଥିବୀ ସୂର୍ଯ୍ୟଠାରୁ ପ୍ରାୟ ପନ୍ଦର କୋଟି କିଲୋମିଟର ଦୂରରେ ଅଛି । ଚନ୍ଦ୍ର ପୃଥିବୀଠାରୁ ପ୍ରାୟ ଚାରିଲକ୍ଷ କିଲୋମିଟର ଦୂର । ହିସାବ କରି ଦେଖ, ସୂର୍ଯ୍ୟ ତୁଳନାରେ ଚନ୍ଦ୍ର; ଆମର କେତେ ପାଖରେ ଅଛନ୍ତି । ମାତ୍ର ପାଖ ବୋଲି ଯେ ଇଚ୍ଛାକଲେ ସେଠାକୁ ଯାଇ ଆସି ପାରିବ ତା ନୁହେଁ ।

ରେଳ ଗାଡ଼ିରେ ତୁମେ ଯାଇଥିବ । ରେଳଗାଡ଼ି ଘଣ୍ଟାକେ ପ୍ରାୟ ଚାଳିଶି କିଲୋମିଟର ଯାଏ । ଯଦି ପୃଥିବୀଠାରୁ ଗୋଟିଏ ରେଳ-ଗାଡ଼ିରେ ବସି ତୁମେ ଚନ୍ଦ୍ରକୁ ଯିବ ତୁମକୁ କେତେଦିନ ଲାଗିବ ଜାଣ ? ତୁମକୁ ଚନ୍ଦ୍ରରେ ପହଞ୍ଚିବା ପାଇଁ ପ୍ରାୟ ୪୦୦ଦିନ ଲାଗିଯିବ ।

ଚନ୍ଦ୍ରକୁ ରେଳରାସ୍ତା ହେବାର ସମ୍ଭାବନା ନାହିଁ । ତେଣୁ ରେଳରେ କେହି ଚନ୍ଦ୍ରକୁ କେବେ ହେଲେ ଯାଇ ପାରିବ ନାହିଁ ।

ପଣ୍ଡିତମାନେ ସେମାନଙ୍କ ଯନ୍ତ୍ରସବୁଦ୍ୱାରା ଚନ୍ଦ୍ର ବିଷୟରେ ଅନେକ କଥା ଜାଣିଲେଣି । ଚନ୍ଦ୍ରର ଆକାର ପୃଥିବୀର ୪୯ ଭାଗରୁ

ସଂଗେ । ଯାହାକୁ ଚନ୍ଦ୍ରର ଠେକୁଆ ବୋଲି ବୁଢ଼ାମାନେ କହନ୍ତି, ସେ ପ୍ରକୃତରେ ହେଉଛି ପର୍ବତ ମଧ୍ୟସ୍ଥ ଉପତ୍ୟକା, ଗହ୍ୱର ପ୍ରଭୃତି । ଚନ୍ଦ୍ର ଉପରେ ପ୍ରବଳ ଗରମ ଓ ପ୍ରବଳ ଶୀତ । ସେ ପ୍ରକାର ଗରମ କିମ୍ବା ସେ ପ୍ରକାର ଶୀତ ଆମ ପୃଥିବୀରେ କେବେହେଲେ ଅନୁଭୂତ ହୁଏ ନାହିଁ । ଯେଉଁ ଚନ୍ଦ୍ର ଏତେ ସୁନ୍ଦର ଦିଶୁଛି ତା ଉପରଟା ଖୁବ୍ ଉଚ୍ଚନୀଚ । ଅନେକ ଅଂଶରେ ବରଫ ପୂରି ରହିଛି । ସେଠାରେ ପବନ ଆଦୌ ନାହିଁ । ଗଛ ପତ୍ର ମଧ୍ୟ ସ୍ୱପ୍ନ । ଜୀବଜନ୍ତୁଙ୍କ ନାମଗନ୍ଧ ବି ନାହିଁ ।

ଆଜିକାଲି ମନୁଷ୍ୟ ଅନେକ ଅଦ୍ଭୁତ କାର୍ଯ୍ୟ କରିପାରୁଛି । ଉଡ଼ାଜାହାଜରେ ପୃଥିବୀ ଉପରେ ଏକସ୍ଥାନରୁ ଅନ୍ୟସ୍ଥାନକୁ ଉଡ଼ି ଯାଉଛି, ଘଣ୍ଟାକେ ଶହ ଶହ କିଲୋମିଟର ବେଗରେ । ତେବେ ସେ ଚନ୍ଦ୍ରକୁ ନ ଯିବ କାହିଁକି ?

ରୁଷିଆ ଆମେରିକା ପ୍ରଭୃତି ଦେଶର କେତେକ ବଡ଼ ପଣ୍ଡିତ ଅନେକ ଦିନ ହେଲା ଚନ୍ଦ୍ରକୁ ଯିବା ବିଷୟରେ ଚିନ୍ତା କରୁଅଛନ୍ତି । ସେଠାକୁ ଯିବାପାଇଁ କି ପ୍ରକାର ଉଡ଼ାଜାହାଜ ଦରକାର ତାର ଗୋଟିଏ କଳ୍ପନା ସେମାନେ କରିଅଛନ୍ତି । ରକେଟ୍ ପ୍ଲେନ୍ ଦ୍ୱାରା ଚନ୍ଦ୍ରକୁ ଯିବା ସମ୍ଭବପର । ଏହି ପ୍ଲେନର ବେଗ ଏପରି ହେବ ଯେ ଚନ୍ଦ୍ରରେ ପହଞ୍ଚିବାକୁ ଅଳ୍ପ କେତେଘଣ୍ଟା ମାତ୍ର ଲାଗିବ । ଚନ୍ଦ୍ରରେ ପହଞ୍ଚିଲେ ସେଠାରେ ଯେଉଁ ସବୁ ଅସୁବିଧା ଘଟିବ, ତାର ପ୍ରତିକାର ମଧ୍ୟ ଚିନ୍ତା କରାଯାଇଛି ।

ରୁଷିଆର ବୈଜ୍ଞାନିକମାନେ ୧୯୫୯ ମସିହା ସେପ୍ଟେମ୍ବର ମାସ ୧୪ ତାରିଖ ଦିନ ଗୋଟିଏ ରକେଟ୍ ଚନ୍ଦ୍ର ଉପରେ ନିକ୍ଷେପ କରିବାକୁ ସମର୍ଥ ହୋଇ ଅଛନ୍ତି । ଏହି ରକେଟରେ କେତେକ

ବୈଜ୍ଞାନିକ ଯନ୍ତ୍ର ରଖା ଯାଇଥିଲା । ଏହି ଯନ୍ତ୍ରଗୁଡ଼ିକ ସାହାଯ୍ୟରେ ପୃଥିବୀ ଓ ଚନ୍ଦ୍ରର ମଧ୍ୟବର୍ତ୍ତୀ ଶୂନ୍ୟ ସମ୍ବନ୍ଧରେ ଅନେକ ତଥ୍ୟ ଜଣାଯାଇଛି । ଏହା ଫଳରେ ପୃଥିବୀରୁ ଚନ୍ଦ୍ରକୁ ଯିବାରେ କି କି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ସେ ବିଷୟରେ ଅଧିକ ଧାରଣା ଜନ୍ମିବ ଓ ସେ ସବୁକୁ ଅତିକ୍ରମ କରିବାର ପନ୍ଥା ସ୍ଥିରୀକୃତ ହୋଇ ପାରିବ । ବୈଜ୍ଞାନିକମାନେ ଆଶା କରୁଅଛନ୍ତି ଯେ ଆଉ କେତେକ ବର୍ଷ ମଧ୍ୟରେ ମନୁଷ୍ୟ ଚନ୍ଦ୍ରମଣ୍ଡଳକୁ ଯାତାୟାତ କରି ପାରିବ ।

ଆଲେକ୍‌ଜାଣ୍ଡ୍ରର ଆନାନ୍‌ଫ ନାମରେ ଜଣେ ପଣ୍ଡିତ ଚନ୍ଦ୍ରକୁ ଯିବା ବିଷୟରେ ବହୁତ ଚିନ୍ତା କରିଅଛନ୍ତି । ଚନ୍ଦ୍ରକୁ ଯିବାପାଇଁ ତାଙ୍କର ଆଗ୍ରହ ଏତେ ବେଶୀ ଯେ ସେ କହୁଛନ୍ତି ।

"ଚନ୍ଦ୍ରକୁ ଯିବାକୁ ମରଣସୁଦ୍ଧା ମୋତେ ବାରଣ କରିପାରିବ ନାହିଁ । ଯଦି ଚନ୍ଦ୍ରରେ ପହଞ୍ଚିବା ପୂର୍ବରୁ ମୋର ମୃତ୍ୟୁ ହୁଏ, ତେବେ ଚନ୍ଦ୍ରକୁ ଯେଉଁ ବିମାନ ପ୍ରଥମେ ଯିବ ସେଥିରେ ମୋର ଶବକୁ ନେଇ ସେହି ଚନ୍ଦ୍ରରେ କବର ଦେବ ।"

ଚନ୍ଦ୍ର ସମ୍ବନ୍ଧରେ ଏତେ କଥା ଶୁଣିଲ । ଏବେ କହ ଦେଖି ତୁମେ ଚନ୍ଦ୍ରକୁ ଯିବ କି ?

---

## କେତେଟା ବାଜିଛି !

ଆଜକାଲି ଯେ କୌଣସି ଲୋକକୁ ଗଲାବେଳକୁ ପଚାରିବାକୁ ହେଉଛି—କେତେଟା ବାଜିଲା ? ଯେ ରେଳରେ ଯିବ ବୋଲି ଷ୍ଟେସନକୁ ଯାଉଛନ୍ତି; ସେ ପଚାରେ—କେତେଟା ବାଜିଛି ? ଯେ

କଚେରୀରେ ଠିକ୍ ସମୟରେ ପହଞ୍ଚିବ ବୋଲି ଧାଉଁଛୁ, ସେ ପଚାରୁଛୁ—କେତେଟା ବାଜିଛି । ସ୍କୁଲ୍ କଲେଜର ପିଲା, କଚେରୀର କର୍ମଚାରୀ-ଓକିଲ, ରେଳ-ବସ୍-ଟ୍ରାମର ଯାତ୍ରୀ କାରଖାନାର ମୂଲିଆ, ଜେଲଖାନାର 'ଓ୍ୱାର୍ଡର, ଜାହାଜର କ୍ୟାପ୍ଟେନ, ସମସ୍ତେ ବୁଝୁଛନ୍ତି—କେତେଟା ବାଜିଛି ?

'କେତେଟା ବାଜିଛି'—ଏ ପ୍ରଶ୍ନର ଉତ୍ତର ଦିଏ କଳଘଡ଼ି । ଘଣ୍ଟା ବା କଳଘଡ଼ି ବିନା ଆମେ ଏ ଯୁଗରେ ଘଡ଼ିଏ ଚଳି ପାରିବା ନାହିଁ । ସେଥିପାଇଁ କେଉଁଠି କାନ୍ଥରେ ଘଡ଼ି ଝୁଲୁଛି, କାହାର ପକେଟରେ ଅଛି, କାହାର ବା ହାତର ମଣିବନ୍ଧରେ ଘଡ଼ି ବନ୍ଧା । ଯଦି ପୃଥିବୀର ସବୁଯାକ ଘଣ୍ଟା ଆଜି ହଠାତ୍ ନଷ୍ଟ କରି ଦିଆ-ଯାଆନ୍ତା, ତାହାହେଲେ ଅବସ୍ଥା କଅଣ ହୁଅନ୍ତା, ଭାବିଲ ? ତୁମ୍ଭ-ମାନେ କେତେବେଳେ ଯାଇ ସ୍କୁଲକୁ ଆସନ୍ତ, ଠିକଣା ରହନ୍ତା ନାହିଁ; ଶିକ୍ଷକ ପଢ଼ାଇବାକୁ ଆସିଲାବେଳକୁ କେତେ ଛାତ୍ରଛାତ୍ରୀ ଛୁଟି ହେଲାଣି ଭାବି ଘରକୁ ଚାଲି ଯାଇଥାନ୍ତେ । ରେଳଗାଡ଼ି ଯେଉଁ ଷ୍ଟେସନରେ ଯେତେବେଳେ ପହଞ୍ଚିବାର କଥା ସେତେବେଳେ ପହଞ୍ଚନ୍ତା ନାହିଁ । କଚେରୀରେ ହାକିମ ପହଞ୍ଚିଲା ବେଳକୁ ଓକିଲ ଘରେ ବସି ଖାଉଥାନ୍ତେ । ଏହିପରି ଗୋଟାଏ ଭୟଙ୍କର ବିଭ୍ରାଟ ସୃଷ୍ଟି ହୋଇଯାନ୍ତା ।

ଘଣ୍ଟା ବୋଲି ଯେଉଁ କଳଟି ସବୁକାମ ସୁରୁଖୁରୁରେ ଚଳାଉଛି ତାହା ଛୋଟ ହେଲେହେଁ କମ୍ ଦରକାରୀ ନୁହେଁ । ଥରେ ଭାବିଲ, ତୁମ ସ୍କୁଲରେ ଯଦି ଘଣ୍ଟା ନଥାନ୍ତା ତେବେ ସ୍କୁଲ୍ କାର୍ଯ୍ୟରେ କିଛି ଶୃଙ୍ଖଳା ଥାଆନ୍ତା କି ? ମାତ୍ର ଆଜିକାଲି ଆମେ ଯେଉଁପରି ଘଣ୍ଟା ଦେଖୁ ସେପରି ଘଣ୍ଟା କାଳେ କାଳେ ନ ଥିଲା । ତେବେ ଲୋକେ ସେ

ଆଗକାଳରେ ସମୟର ହିସାବ ରଖୁ ନ ଥିଲେ, ତା ନୁହେଁ । ସେମାନେ ସମୟର ହିସାବ ରଖିବାପାଇଁ ଅନ୍ୟ ଉପାୟ ବ୍ୟବହାର କରୁଥିଲେ । ଏବେ ମଧ୍ୟ ଗାଆଁ ଗହଳର ଅଶିକ୍ଷିତ ଲୋକ ସମୟର ହିସାବ ରଖିବାକୁ ଘଣ୍ଟା ଉପରେ ନିର୍ଭର କରନ୍ତି ନାହିଁ । ତାଙ୍କର ବେଳ ଜାଣିବାର ଅନେକ ଉପାୟ ଅଛି ।

ବୁଢୀ ହଳ କହୁଛି, ଆକାଶରେ ସୂର୍ଯ୍ୟଙ୍କୁ ଚାହିଁ କହେ—ବେଳ ପହରେ ହେଲଣି । ରାତିରେ କଳୁଆମାନେ ହୁକେ ହୋ କରି ଭୁକି ଉଠିଲେ, ଘରେ ଶୋଇଥିବା ଘରଣୀମାନେ କହିଲେ—ରାତି ପହରେ ହେଲ । କୁକୁଡ଼ାମାନେ ପାହାନ୍ତିଆ ବେଳକୁ ରଡିଲେ—ଲୋକେ ଜାଣିଲେ, ସକାଳ ହୋଇ ଆସିଲା । ଲୋକଙ୍କୁ ସମୟ ଜଣାଇ ଦେବା ବିଷୟରେ ସୂର୍ଯ୍ୟ, ଚନ୍ଦ୍ର, ତାରା, କଳୁଆ, କୁକୁଡ଼ା ପ୍ରଭୃତି ସାହାଯ୍ୟ କରନ୍ତି, ମାତ୍ର ଲୋକେ ଏମାନଙ୍କଠାରୁ ଠିକ୍ ସମୟ ଜାଣିପାରନ୍ତି ନାହିଁ ।

ଆକାଶର ସୂର୍ଯ୍ୟ ହେଉଛନ୍ତି ଅସଲ ଘଣ୍ଟା । ସେ ପ୍ରତିଦିନ ଠିକ୍ ସମୟରେ ଉଇଁ ଠିକ୍ ସମୟରେ ଅସ୍ତ ହୁଅନ୍ତି । ତେଣୁ ତାଙ୍କୁ ଚାହିଁ ବେଳ ଜାଣିବା ସବୁଠାରୁ ଭଲ ଉପାୟ । ଆଜ ସୂର୍ଯ୍ୟ ଉଦୟ ହେବା ବେଳଠାରୁ କାଲି ସୂର୍ଯ୍ୟ ଉଦୟ ବେଳ ପର୍ଯ୍ୟନ୍ତ ୨୪ ଘଣ୍ଟା । ତେଣୁ ସୂର୍ଯ୍ୟଙ୍କୁ ଆମେ ସର୍ବସାଧାରଣ ଆକାଶଘଡ଼ି କହିଲେ କ୍ଷତି କଅଣ ? ମଫସଲର ଲୋକେ ସକାଳ, ଦିପହର, ବେଳବୁଡ଼, ରାତିଅଧ ଏହିପରି କହି ସମୟର ହିସାବ ଦେଇଥାନ୍ତି ।

କିନ୍ତୁ ସଭ୍ୟ ସମାଜରେ ସକାଳ, ବେଳବୁଡ଼ ଏହିପରି ସମୟ ହିସାବରେ କାମ ଚଳିବ ନାହିଁ । ସହରର ଲୋକଙ୍କୁ ଘଣ୍ଟା, ମିନିଟ

ଧର କାମକରବାକୁ ପଡ଼ୁଛି । ତେଣୁ ସେମାନଙ୍କର କଳଘଣ୍ଟା ନ ହେଲେ ନଚଳେ । ଏବେ ମଫସଲମାନଙ୍କରେ ମଧ୍ୟ କଳଘଣ୍ଟାର ଦରକାର ପଡ଼ୁଲାଣି ।

ତୁମ୍ଭେମାନେ ଜାଣ ଯେ ସୂର୍ଯ୍ୟ ଆକାଶରେ ଆମ ମୁଣ୍ଡ ଉପର ଆଡ଼କୁ ଯେତିକି ଉଠନ୍ତି, ଆମର ଛାଇ ସେତିକି ଛୋଟ ହୋଇ ଆସେ । ମଝି ଆକାଶରୁ ସୂର୍ଯ୍ୟ ଯେତିକି ତଳକୁ ଯାଆନ୍ତି ଛାଇ ପୁଣି ସେତିକି ଲମ୍ବ ହୁଏ । ଦ' ପହର ବେଳର ଛାଇ ସବୁଠାରୁ ଛୋଟ । ଏହି ହେଉଛି ସମୟ ଜାଣିବା ପାଇଁ କୌଣସି ପଦାର୍ଥର ଛାୟାର ଲମ୍ବା ଉପରେ ନିର୍ଭର କରାଯାଇପାରେ । ପ୍ରାୟ ଅଢ଼େଇହଜାର ବର୍ଷ ତଳେ ଗ୍ରୀସ୍‌ଦେଶର ଲୋକେ ଗୋଟିଏ ସ୍ତମ୍ଭର ଛାୟାକୁ ମାପି ସମୟ ସ୍ଥିର କରୁଥିଲେ ।

ପ୍ରାଚୀନ କାଳରେ ଭାରତର ସାଧୁମାନେ ତୀର୍ଥରୁ ତୀର୍ଥ ବୁଲୁଥିଲେ । ସେମାନେ ସମୟ ଜାଣିବାପାଇଁ ଏକ ବଡ଼ିଆ ଉପାୟ ସ୍ଥିର କରିଥିଲେ । ବୁଲିବା ବେଳକୁ ସେମାନେ ଖଣ୍ଡିଏ ଖଣ୍ଡିଏ ବାଡ଼ି ହାତରେ ଧରିଥାନ୍ତି । ବାଡ଼ିଟି ଛଅକଣିଆ । ପ୍ରତି କଣର ମୁଣ୍ଡରେ ଗୋଟିଏ ଲେଖାଏଁ କଣା ଥାଏ । ସେହି କଣାରେ ଗୋଟିଏ ଲୁହା କଣ୍ଟା ପଶିଥାଏ । ବାଡ଼ରେ ସମୟ ଜଣାଇବାପାଇଁ ଦାଗ ଥାଏ । କଣ୍ଟାଟିର ଛାଇ ବାଡ଼ିର କେଉଁ ଦାଗ ପର୍ଯ୍ୟନ୍ତ ହୋଇଛି ଦେଖି ସେମାନେ ବେଳ ଜାଣିପାରନ୍ତି । ଛଅକୋଣିଆ ବାଡ଼ି କରିବାର ଉଦ୍ଦେଶ୍ୟ ହେଉଛି—ଋତୁ ଅନୁସାରେ ଛାଇର ଲମ୍ବରେ ତଫାତ୍ ଘଟେ । ତେଣୁ ଛଅ ଋତୁର ପ୍ରତ୍ୟେକଟି ପାଇଁ ବାଡ଼ିର ଗୋଟିଏ ନିର୍ଦ୍ଦିଷ୍ଟ କୋଣ ବ୍ୟବହାର କରାଯାଏ । ଋତୁ ଅନୁସାରେ ଭିନ୍ନ ଚିହ୍ନ ଥାଏ । ଏହି ବାଡ଼ିଟି ଥିଲା ସେମାନଙ୍କର ଘଣ୍ଟା

ପୂର୍ବକାଳରେ ବେବିଲୋନ୍ ବୋଲି ଗୋଟିଏ ସହର ଥିଲା । ସେଠାରେ ବହୁତ ଧନୀ ଓ ଜ୍ଞାନୀ ଲୋକ ଥିଲେ । ସେମାନେ ଖୁବ୍ ସଭ୍ୟ ମଧ୍ୟ ଥିଲେ । ସେମାନେ ସମୟ ଜାଣିବାପାଇଁ ସହରର ପ୍ରଧାନ ସ୍ଥାନମାନଙ୍କରେ ଗୋଟିଏ ଗୋଟିଏ ସ୍ତମ୍ଭ ତିଆରି କରାଇଥିଲେ । ତା ମଝିରେ ଥାଏ ଗୋଟିଏ ଲମ୍ବା ଚକତି । ତାର ବୃତ୍ତପାଖେ ରୋମାନ୍ ଅକ୍ଷରରେ ଅଙ୍କ ଲେଖାଥାଏ । ସୂର୍ଯ୍ୟଙ୍କର ଗତି ସଙ୍ଗେ ଚକତିର ଛାଇ ବଦଳୁଥାଏ । ଏହି ଛାଇକୁ ଦେଖି ଲୋକେ ସମୟ ଜାଣି ପାରୁଥିଲେ । ଏହାହିଁ ହେଉଛି ସୂର୍ଯ୍ୟ ଘଡ଼ି । ଗ୍ରୀସ୍ ଓ ଋଷିଆ ପ୍ରଭୃତି ଦେଶର ଲୋକେ ବେବିଲୋନ୍‌ରୁ ସୂର୍ଯ୍ୟଘଡ଼ିର ବ୍ୟବହାର ଶିଖିଥିଲେ ।

ଭାରତ ଓ ଋଷିଆରେ ବହୁକାଳରୁ ସୂର୍ଯ୍ୟଘଡ଼ି ଓ ଜଳଘଡ଼ିର ବ୍ୟବହାର ଥିଲା । ଗୋଟିଏ ପାତ୍ରରେ ଜଳ ଭର୍ତ୍ତି କରାଯାଏ । ପାତ୍ର ତଳେ ଗୋଟିଏ ଛିଦ୍ର ଥାଏ । ସେହି ଛିଦ୍ରବାଟେ ଟୋପା ଟୋପା ହୋଇ ଜଳ ପଡ଼େ । ମନେକର କୌଣସି ପାତ୍ରର ସମସ୍ତ ଜଳ ବାହାରି ଯିବାକୁ ଏକଘଣ୍ଟା ଲାଗେ । ତେବେ ପାତ୍ରରେ ଜଳ ପୂର୍ଣ୍ଣ କରି ଛିଦ୍ରଟି ଖୋଲି ଦେବାର ଯେତେ ସମୟ ପରେ ପାତ୍ରଟି ଶୂନ୍ୟ ହେବ ସେତିକି ସମୟ ହେଲା ଏକଘଣ୍ଟା ।



( ସୂର୍ଯ୍ୟଘଡ଼ି )

ଜଳଘଡ଼ିର ଅସୁବିଧା ଏହି ଯେ ପାତ୍ର ଜଳଶୂନ୍ୟ ହେଲାକ୍ଷଣି ପୁଣି ଜଳପୂର୍ଣ୍ଣ କରିବା ଦରକାର । ତା ନ ହେଲେ ସମୟର ହିସାବ ଭୁଲ ହୋଇଯିବ ।

ସୂର୍ଯ୍ୟଘଣ୍ଟା ବାଲିଘଡ଼ି କିମ୍ବା ଜଳଘଣ୍ଟା ଦ୍ୱାରା ସମୟ ଜଣା ଯାଉଥିଲା ସତ; ମାତ୍ର ସେଗୁଡ଼ିକୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେବା ସହଜ ନ ଥିଲା । ପୁଣି ଜଳଘଡ଼ିର ଯତ୍ନ ନେବାକୁ ଲୋକ ଦରକାର ହେଉଥିଲେ । ସେଥିପାଇଁ ବୁଦ୍ଧିମାନ ଲୋକେ ଅନ୍ୟପ୍ରକାର ଘଣ୍ଟା ତିଆରି କରିବାକୁ ଚେଷ୍ଟା କଲେ ।

ପ୍ରାୟ ଦୁଇହଜାର ବର୍ଷ ତଳେ ମିଶରର ଆଲେକଜାଣ୍ଡ୍ରିଆ ସହରରେ ଅନେକ ଧନୀଲୋକ ବାସ କରୁଥିଲେ । ସେହି ସହରର ଜଣେ ଲୋକ କେତେଗୁଡ଼ିଏ ଚକ ଲଗାଇ ଗୋଟିଏ ଘଣ୍ଟା ତିଆରି କଲା । ଏହି ଘଣ୍ଟା ଅନ୍ୟାନ୍ୟ ଘଣ୍ଟାଠାରୁ ବହୁତ ପରିମାଣରେ ଉନ୍ନତ ଧରଣର ହୋଇଥିଲା ।

ସେ କାଳରେ ସାଧାରଣ ଲୋକେ ଘଡ଼ି ରଖିପାରୁ ନ ଥିଲେ । କେବଳ ରାଜାମହାରାଜାଙ୍କ ପରି ଧନୀଲୋକଙ୍କ ପକ୍ଷରେ ଘଣ୍ଟା ରଖିବା ସମ୍ଭବପର ହେଉଥିଲା । କଥିତ ଅଛି ଯେ ବାଗ୍‌ଦାଦର ଖଲିଫା ହାରୁନ୍‌ ଆଲ୍‌ ରସିଦ୍‌ ସମ୍ରାଟ ଚାର୍ଲସଙ୍କୁ ଗୋଟିଏ ବିଚିତ୍ର ଜଳଘଡ଼ି ଉପହାର ଦେଇଥିଲେ । ଏହି ଘଡ଼ିଟି ସେତେବେଳେ ଗୋଟିଏ ଆଶ୍ଚର୍ଯ୍ୟଜନକ ପଦାର୍ଥ ଥିଲା ।

ଇଂଲଣ୍ଡର ରାଜା ପ୍ରଥମ ଏଡ଼ୱାର୍ଡ଼ ଲଣ୍ଡନ ସହରର ପାର୍ଲିଆମେଣ୍ଟ ଘର ଉପରେ ଗୋଟିଏ ପ୍ରକାଣ୍ଡ ଘଣ୍ଟା ରଖାଇଥିଲେ । ଏହି ଘଡ଼ିର ବେ ଶୁଣି ସହରର ଅନେକ ଲୋକ ସମୟ ଜାଣି ପାରୁଥିଲେ । ଫ୍ରାନ୍‌ସର ରାଜା ପଞ୍ଚମ ଚାର୍ଲସ୍‌ ଜର୍ମାନୀରୁ ଜଣେ ଘଡ଼ିର କାରିଗର ଅଣାଇଁ ତାଙ୍କ ରାଜପ୍ରାସାଦ ଉପରେ ଗୋଟିଏ ଘଡ଼ି ବସାଇଥିଲେ । ଘଡ଼ିଟି ତିଆରି କରିବାକୁ କାରିଗରକୁ ଆଠବର୍ଷ ଲାଗିଥିଲା । ସେ କାଳରେ ଘଡ଼ିର ପ୍ରତ୍ୟେକ ଅଂଶକୁ ହାତରେ ତିଆରି କରିବାକୁ ହେଉଥିଲା । ସେଥିପାଇଁ ଗୋଟିଏ ଗୋଟିଏ ଘଡ଼ି

ତିଆରି କରିବାକୁ ବହୁଦିନ ଲାଗୁଥିଲା ଓ ଘଣ୍ଟାର ଦାମ୍ ଏତେ ବେଶୀ ଥିଲା ।




ପ୍ରଥମେ ପ୍ରଥମେ ଯେଉଁ ଘଡ଼ି ତିଆରି ହେଉଥିଲା, ସେ ସବୁ ଖୁବ୍ ବଡ଼ ଥିଲା । କ୍ରମେ ଛୋଟ ଆକାରରେ ନେ ଆଣ କରିବା ଭଳି ଘଡ଼ି ତିଆରି ହେଲା । ୧୫୦୦ ଖ୍ରୀଷ୍ଟାବ୍ଦରେ ଜର୍ମାନୀର ଜଣେ କାରିଗର ଗୋଟିଏ ପକେଟ୍ ଘଡ଼ି ତିଆରି କଲେ । ସେ ପ୍ରଥମେ ଘଡ଼ିରେ ସ୍ପ୍ରିଙ୍ଗ୍ ବ୍ୟବହାର କଲେ । ଅଳ୍ପଦିନ ଭିତରେ ଛୋଟ ଘଡ଼ି ବ୍ୟବହାର କରିବା ପାଇଁ ବଡ଼ଲୋକମାନଙ୍କର ଆଗ୍ରହ ଜନ୍ମିଲା । କାରିଗରମାନେ ବରାଦ ଅନୁସାରେ ନାନା ଆକାରର ଛୋଟଘଡ଼ି ତିଆରି କଲେ । ଏପରିକି ଘଡ଼ିକୁ କାନରେ ଅଳଙ୍କାରରୂପେ ବ୍ୟବହାର କଲେ । କେହି ଅବା ମୁଦିରେ ଘଡ଼ି ବସାଇ ପିନ୍ଧିଲେ ।

ଥରେ ଇଂଲଣ୍ଡର ରାଜା ଦ୍ୱିତୀୟ ଚାର୍ଲସ୍ ଫ୍ରାନ୍ସର ସମ୍ରାଟ ଚତୁର୍ଦ୍ଦଶ ଲୁଇଙ୍କୁ ଗୋଟିଏ ଘଡ଼ି ଉପହାର ଦେଇଥିଲେ । କାଳେ କିଏ ଭିତରେ କଳକବ୍‌ଜା ଦେଖି ସେହିପରି ଘଣ୍ଟା ତିଆରି କରି ପକାଇବ, ସେଥିପାଇଁ ଘଡ଼ିରେ କଳକବ୍‌ଜାକୁ ଗୋଟିଏ ଖୋଳରେ ବନ୍ଦ କରି ସିଲ୍ ଦିଆଯାଇଥିଲା । ସମ୍ରାଟ ଲୁଇଙ୍କର ନିଜ ଘଡ଼ି କାରିଗର ଏହି ଘଣ୍ଟା ଫିଟାଇ କଳକବ୍‌ଜା ଦେଖି ପାରିଲେ ନାହିଁ । ତେଣୁ ଆଉ ଜଣେ ବୁଢ଼ା କାରିଗରକୁ ଅଣାଗଲା । ସେ ଏହି ଘଣ୍ଟାକୁ ଖୋଲି ସେହିପରି ଘଣ୍ଟା ତିଆରି କରିବାର କୌଶଳ

ଶିଖିଗଲେ । ରାଜା ତାଙ୍କପାଇଁ ଯଥେଷ୍ଟ ପେନ୍‌ସନ୍ ଖଞ୍ଜିଦେଲେ । ସେ କାଳରେ ଘଡ଼ିର କାରିଗରଙ୍କ ସଂଖ୍ୟା ଖୁବ୍ କମ୍ ଥିଲା ଓ ସେମାନଙ୍କୁ କଠିନ ପରିଶ୍ରମ କରିବାକୁ ପଡ଼ୁଥିଲା ।

କଳର ଯୁଗ ଆସିଲା । ଲୋକେ ନିଜ ହାତରେ ମିହନ୍ତ କରି କାମ କରିବା ଅପେକ୍ଷା କଳଦ୍ୱାରା କରାଇବାକୁ ସୁବିଧା ମନେକଲେ । ସୂତା କାଟିବା, ଲୁଗା ବୁଣିବା ପ୍ରଭୃତି କାର୍ଯ୍ୟ କଳ ସାହାଯ୍ୟରେ ହେଲା । ଲୋକେ ବୁଦ୍ଧି ବଳରେ କଳଦ୍ୱାରା ଘଡ଼ିର ବିଭିନ୍ନ ଅଂଶ ତିଆରି କରି ନାନା ରକମର ଘଡ଼ି ବ୍ୟବହାର କଲେ । ଆଜିକାଲି ଘଡ଼ିର ଦାମ ଏତେ କମ୍ ହୋଇଯାଇଛି ଯେ ଅନେକ ସାଧାରଣଲୋକ ମଧ୍ୟ ତାହାକୁ କିଣି ପାରୁଅଛନ୍ତି । ପ୍ରାୟ ସବୁ ଅଫିସ୍ କାନ୍ଥରେ ବଡ଼ ଘଣ୍ଟା ଟଙ୍ଗା ହୋଇଥିବାର ଦେଖିବ । ଛୋଟ ଘଣ୍ଟା କେତେ ପକେଟରେ ବା କେତେ ହାତରେ ଯେପରି ନିଜ କାମରେ ଲାଗିଅଛି । ଘଣ୍ଟାଟିଏ ନ ହେଲେ ଆଜିକାଲି ଯୁଗରେ ଚଳିବା ମୁସ୍କିଲ ହୋଇ ପଡ଼ିବ ।

---

## କଳର କରାମତି

ଲକ୍ଷ ଲକ୍ଷ ବର୍ଷତଳେ ଯେଉଁ ମନୁଷ୍ୟ ପୃଥିବୀରେ ପ୍ରଥମେ ଦେଖାଦେଲେ ସେମାନେ ଆମପରି ନ ଥିଲେ । ପଶୁଙ୍କଠାରୁ ତାଙ୍କର ପ୍ରଭେଦ ଖୁବ୍ ଅଳ୍ପ ଥିଲା । ବଣର ଫଳମୂଳ ଓ ବଣ-ଜନ୍ତୁଙ୍କର ମାଂସ ସେମାନଙ୍କ ଆହାର ଥିଲା । ତାକୁ ପୁଣି ସେମାନେ ସିଝେଇ ଜାଣି ନଥିଲେ, କଞ୍ଚା ଖାଉଥିଲେ । ପାହାଡ଼ର କୋରଡ଼ରେ ସେମାନେ ରହୁଥିଲେ ।

ଆସ୍ତେ ଆସ୍ତେ ମଣିଷର ବୁଦ୍ଧି ବଢ଼ିଲା । ସେ ନିଆଁର ବ୍ୟବହାର ଶିଖିଲା । ଖାଇବା ଜିନିଷ କଞ୍ଚା ନ ଖାଇ ରନ୍ଧା ଖାଇଲା । ଖୋଲା-ଡ଼ରେ ନ ରହି ସେ କୁଡ଼ିଆ ଘର କରି ରହିଲା । ଦେହରେ, ବଣ ଜନ୍ତୁର ଚମଡ଼ା ଘୋଡ଼ି ନ ହୋଇ ଲୁଗା ପିନ୍ଧିଲା । ଦିନକୁ ଦିନ ସେ ନୂଆ ନୂଆ ଜିନିଷ ବାହାର କଲା, ଆହୁରି ସୁଖରେ ରହିଲା । ଏହିପରି ହଜାର ହଜାର ବର୍ଷ ଧରେ ମନୁଷ୍ୟ ସଭ୍ୟ ହେବାକୁ ଶିଖିଲା । ଏବେ ବି ପୃଥିବୀର କେତେକ ଅଞ୍ଚଳରେ ମନୁଷ୍ୟ ସେହି ପୂର୍ବ ଯୁଗର ମନୁଷ୍ୟପରି ଅସଭ୍ୟ ଅଛନ୍ତି ।

ଯେଉଁ ଜାତିର ଲୋକେ ଯେତେ ଭଲଭାବରେ ଜୀବନ-ଯାପନ କରନ୍ତି ଓ ଯେତେ ବଡ଼ ବଡ଼ କଥା ଚିନ୍ତା କରିପାରନ୍ତି, ସେ ଜାତି ସେତେ ଉନ୍ନତ । ସୁଖରେ ରହିବାକୁ ହେଲେ ପରିଶ୍ରମ କରିବାକୁ ହେବ । ଦେହର ପରିଶ୍ରମ ଓ ମୁଣ୍ଡର ପରିଶ୍ରମ ଉଭୟ ଦରକାର । ସଭ୍ୟତାର ପ୍ରଥମ ଅବସ୍ଥାରୁ ମନୁଷ୍ୟ ନିଜର ଦେହ ମିହନତକୁ କମାଇବାକୁ ଚେଷ୍ଟା କରି ଆସିଅଛି । ପ୍ରଥମେ କୌଣସି ଜିନିଷ ଅନ୍ୟ ସ୍ଥାନକୁ ନେବାକୁ ହେଲେ ସେ ନିଜେ ବୋହି ନେଉଥିଲା । ପରେ ଅନ୍ୟ ଜୀବମାନଙ୍କୁ ପୋଷି ସେମାନଙ୍କ ଦ୍ୱାରା ବୁହାଇଲା । ଏଥିରେ ତାର ଶାରୀରିକ ପରିଶ୍ରମ କମ୍ ପଡ଼ିଲା ।

ମନୁଷ୍ୟର ବୁଦ୍ଧି ବେଶୀ ହେବାରୁ ସେ ଭିନ୍ନ ଭିନ୍ନ ଯନ୍ତ୍ର ତିଆରି କଲା । ଶହ ଶହ ମଣିଷ ଅନେକ ଦିନ ଲାଗି ଯେଉଁ କାମ କରୁଥିଲେ କଳଦ୍ୱାରା ଖୁବ୍ ଅଳ୍ପ ଲୋକ ସେହି କାମକୁ ଦିନକରେ କରି ପାରିଲେ । ଏବେ ଆମେ ଯେଉଁ ଲୁଗା ପିନ୍ଧୁଛୁ, ତାର କଥା ଧର । ଜଣେ ଲୋକ ତାକୁଡ଼ିରେ ସୂତା କାଟିଲେ ଦିନକରେ ପନ୍ଦର ବା କୋଡ଼ିଏ ଗ୍ରାମ ଓଜନର ସୂତା କାଟିବ । ମାତ୍ର ଗୋଟିଏ କାରଖାନାରେ ଦିନକେ ହଜାର ହଜାର କିଲୋଗ୍ରାମ ଓଜନର ସୂତା

କାଟି ହେବ । ସେହିପରି ଜଣେ ଲୋକ ତନ୍ତରେ ଦିନସାରା ମିହନତକରି ଚାରି ପାଞ୍ଚ ମିଟର ଲୁଗା ବୁଣିଲେ ଖୁବ୍ ବେଶୀ ହେଲା । କିନ୍ତୁ କାରଖାନାରେ କଳଯୋଗେ ଦିନକ ଭିତରେ ହଜାର ହଜାର ମିଟର ଲୁଗା ବୁଣି ହେଉଛି ।



ଏ ଗଲା ଶାରୀରିକ ପରିଶ୍ରମର କଥା । ଆଜିକାଲି ଯୁଗର ମନୁଷ୍ୟକୁ ଅନେକ ପ୍ରକାରର ମାନସିକ ପରିଶ୍ରମ କରିବାକୁ ପଡ଼ୁଛି । ମନେକର; ତୁମେ ଗୋଟିଏ ନୂଆ ଭାଷା ଶିଖିବ କିମ୍ବା କୌଣସି ଅଙ୍କ କଷିବ । ଏପରି ସ୍ଥଳରେ ମାନସିକ ପରିଶ୍ରମ ଦରକାର । ଆମର ସ୍କୁଲ କଲେଜରେ ଯେଉଁ ପ୍ରକାର ଶିକ୍ଷା ଦିଆଯାଉଛି, ତାହା ପ୍ରାୟ କେବଳ ମାନସିକ ଶିକ୍ଷା ।

କୌଣସି ଗୋଟିଏ ଅଫିସକୁ ଗଲେ ଦେଖିବ, ସେଠାରେ ଅନେକ ଲୋକ କାମ କରୁଛନ୍ତି । କିଏ ଚିଠିପତ୍ର ଲେଖୁଛି, କିଏ ଟାଇପ୍ ରାଇଟର ଯନ୍ତ୍ରରେ ଚିଠି ଛାପି ଯାଉଛି, କିଏ ଅବା ବଡ଼ ଖାତାଟାଏ ଆଗରେ ପକାଇ ଲକ୍ଷ ଲକ୍ଷ ଟଙ୍କାର ହିସାବ ଯୋଡ଼ାଣ କରୁଛି ।

ହିସାବରେ ହିସାବ ଯୋଡ଼ାଣ ବହୁତ କରିବାକୁ ପଡ଼େ । ସେଥିରେ ବହୁତ ସମୟ ମଧ୍ୟ ବ୍ୟୟ ହୁଏ । ତେଣୁ କେତେକ ବୁଦ୍ଧିମାନ ଲୋକ ଭାବିଲେ—ଏ କାମ ଯନ୍ତ୍ର ଦ୍ୱାରା କରାଗଲେ ବହୁତ ପରିଶ୍ରମ କମିଯାଆନ୍ତା ।

ବହୁତ ଭାବିଚିନ୍ତି ସେମାନେ ଏପରି କଳ ତିଆରି କଲେ ଯେ ସେଥିରେ ହିସାବ ଯୋଡ଼ାଣ ପ୍ରଭୃତି କାମ ଖୁବ୍ ଅଳ୍ପ ସମୟ ଭିତରେ ହୋଇ ପାରିଲା । ଗୋଟିଏ ବଡ଼ ହିସାବ କରିବାକୁ ଜଣେ ଲୋକକୁ ଯେଉଁଠି ଅଧଘଣ୍ଟାଏ ଲାଗୁଥିଲା, କଳ ଦ୍ୱାରା ସେ କାମ କରିବାକୁ ଏକମିନଟ ଲାଗିଲା । ଏ କଣ କମ୍ ଲାଭ ?

ଆଉରି ଗୋଟିଏ କଥା—ମଣିଷ ମୁଣ୍ଡ ଖଟାଇ କରି ହିସାବ କରେ । କେବେ କେବେ ତାର ଭୁଲ ହୋଇଯାଏ । ତୁମେ ଅଙ୍କ କଷିଲା ବେଳେ ଏହିପରି କେତେଥର ଭୁଲ କରିଥିବ । କିନ୍ତୁ କଳର ଗୋଟିଏ ସୁବିଧା ଏହି ଯେ କଳ ଠିକ୍ ଥିବା ପର୍ଯ୍ୟନ୍ତ ସେ ସେ କେବେ ଭୁଲ୍ କରିବ ନାହିଁ ।

ଆମେ ଯେଉଁ ଟଙ୍କା, ପଇସା ପ୍ରଭୃତି ମୁଦ୍ରା ପ୍ରତିଦିନ କାରବାର କରୁ, ସେ ସବୁ କଳରେ ତିଆରି । ସେଗୁଡ଼ିକୁ କଳ ଏପରି ତିଆରି କରିଛି ଯେ ଏକ ସମୟରେ ତିଆରି ହୋଇଥିବା ଏକମୂଲ୍ୟର ମୁଦ୍ରା ଭିତରେ ଗୋଟିକୁ ଅନ୍ୟଠାରୁ ବାରି ହେବ ନାହିଁ । ମୁଦ୍ରାଶାଳାରେ ମୁଦ୍ରାଗୁଡ଼ିକର ଯୋଗଗୁଣ

ବାଛି ମୁଦ୍ରାକୁ ଅଲଗା କରିବା, ସେଗୁଡ଼ିକୁ ଗଣି ଥାକ ଥାକ, କରିବା ପ୍ରଭୃତି ସବୁ କାମ କଳଦ୍ୱାରା କରଯାଏ । ଖାଲି ଗଣିବାକେ କେତେ ଲୋକ ଲାଗୁନଥାନ୍ତେ ?

ତୁମେ କେବେ କଟକ କମ୍ବା ଖୋର୍ଦ୍ଧାରୋଡ଼ ଷ୍ଟେସନକୁ ଗଲେ ସେଠାରେ ଗୋଟିଏ ଯନ୍ତ୍ର ଥିଆ ହୋଇଥିବାର ଦେଖି ପାରିବ । ଏହିଟି ମନୁଷ୍ୟ ଓଜନ କରିବାର ଯନ୍ତ୍ର । ତୁମେ ନିଜର ଓଜନ ଜାଣିବାକୁ ଚାହିଁ, ତେବେ କଳ ଉପରେ ଠିଆ ହୋଇଯାଅ । ଦେଖିବ କଳ ଉପରେ ଥିବା ଗୋଟିଏ ଚକ ଘୂରିଯିବ । ତା ପାଖରେ ଗୋଟିଏ ଗ୍ଲେଟ କଣା ଅଛି । ସେଥିରେ ଗୋଟିଏ ଦଶପଇସା ମୁଦ୍ରା ପକାଇ ଦିଅ । ସାମନାରେ ଥିବା ଆଉ ଗୋଟିଏ କଣା ବାଟେ ରେଳ ଟିକଟପରି ଖଣ୍ଡିଏ ଟିକଟ ବାହାରି ଆସିବ । ସେ ଖଣ୍ଡିକ ଆଣ । ସେଥିରେ ତୁମର ଠିକ୍ ଓଜନ ଲେଖା ହୋଇଥିବାର ଦେଖିବ । ଏଥିରୁ ବୁଝି ପାରିବ ଯେ ଏହି କଳଟି କେତେ ରକମର କାମ କରୁଛି । ତୁମର ଓଜନ ଠିକ୍ କରୁଛି; ଯେତେ ଓଜନ ତା ଟିକଟ ଉପରେ ଲେଖି ଦେଉଛି । ଏ କଅଣ ସହଜ କାମ !

ଆଜିକାଲି ବଡ଼ ବଡ଼ ରେଳଷ୍ଟେସନରେ ପ୍ଲାଟଫର୍ମ ଟିକଟ ବିକିବା ପାଇଁ କୌଣସି ଲୋକ ନ ଥାନ୍ତି; ଗୋଟିଏ ଗୋଟିଏ କଳଥାଏ । ଟିକଟର ଦାମ୍ କଳ ଭିତରକୁ ପକାଇ ଦେଲେ ଟିକଟ ବାହାରି ଆସିବ । ଏ କିଛି କମ୍ ସୁବିଧା ନୁହେଁ ।

ବିଲାତ ଆମେରିକା ଆଦି ଦେଶରେ ତେଲ, କିରାସିନି ପ୍ରଭୃତି ତରଳ ଜିନିଷ ବିକିବା ପାଇଁ ଦୋକାନମାନେ ଲୋକ ନ ଲଗାଇ କଳ ବ୍ୟବହାର କରନ୍ତି । ଯନ୍ତ୍ରର ଗୋଟିଏ ଅଂଶରେ ଜିନିଷ

ଥାଏ । ନିର୍ଦ୍ଦିଷ୍ଟ ଜାଗାରେ ପଇସା ପକାଇ ଦେଲେ ଯେତିକି ମୂଲ୍ୟର ଜିନିଷ ବାହାରି ଆସିବ । ବ୍ୟବସାୟୀ କେବଳ ଥରେ ଜିନିଷ ରଖି ଦେଇଥାଏ ; ଆଉ ଥରେ ଆସି ପଇସା ଗଣିନିଏ ।

ମନୁଷ୍ୟ ମାନସିକ ପରିଶ୍ରମରୁ ରକ୍ଷା ପାଇବା ପାଇଁ ଏହିପରି କେତେ କଳ ବାହାର କଲାଣି ଓ କରୁଛି । ବହୁଦିନ ତଳେ ସମ୍ବାଦ ପତ୍ରରେ ବାହାରି ଥିଲା । ଯେ ଗୋଟିଏ ଅଦ୍ଭୁତ ଯନ୍ତ୍ର ବାହାରିଛି । ସେଥିରେ ଇଂରେଜୀ ଓ ଆମେରିକାର କେତେକ ଭାଷା ଅନୁବାଦ କରିବାର ବନ୍ଦୋବସ୍ତ ହୋଇଛି । ତୁମେ ଜାଣି-ଥିବା ଭାଷାର ଶବ୍ଦଗୁଡ଼ିକ କଳରେ ସଜାଇ ଦିଅ । ଯେଉଁ ଭାଷାରେ ଅନୁବାଦ ଚାହୁଁ ସେଥିପାଇଁ ନିର୍ଦ୍ଦିଷ୍ଟ ଚାବିକୁ ଟିପି ଦେଲା-କ୍ଷଣି ଅନୁବାଦ ବାହାରି ପଡ଼ିବ । କାଳେ ତୁମେ ଏହି ଅନୁ-ବାଦର ଉଚ୍ଚାରଣ ଜାଣିନଥିବା ସେଥିପାଇଁ କଳଟି ତାର ଉଚ୍ଚାରଣ ମଧ୍ୟ କହିଦେବ ।

ଦିନକୁ ଦିନ କଳଦ୍ୱାରା ଆହୁରି ଅଦ୍ଭୁତ କାମ ହୋଇ ପାରିବାର ଆଶା କରାଯାଏ ।

---

## ବ୍ରହ୍ମାଣ୍ଡ କେତେ ବଡ଼ ?

ଆମେ ଏଇ ଯେଉଁ ପୃଥିବୀ ଉପରେ ଜନ୍ମି ରହିଛୁ ଓ ମରି-ଗଲେ ଯହିଁରେ ଆମ ହାଡ଼ ମାଉଁସ ମିଶିଯିବ, ସେଇଟି ହେଉଛି ଗୋଟିଏ ଗ୍ରହ । ଆମର ପୃଥିବୀ ସୂର୍ଯ୍ୟ ଚାରିପାଖେ କୋଟି କୋଟି ବର୍ଷ ହେଲା ବୁଲୁଛି । ତାର ପରି ଆଉ କେତେ ଗ୍ରହ ମଧ୍ୟ ସୂର୍ଯ୍ୟ ଚାରିପାଖେ ବୁଲୁଛନ୍ତି । ଏହି ଗ୍ରହମାନଙ୍କ ଭିତରୁ କେତେକଙ୍କ ଚାରିପାଖେ ତାଙ୍କଠାରୁ ଛୋଟ ଜ୍ୟୋତିଷ୍କ ବୁଲୁଛନ୍ତି । ସେଗୁଡିକ

ହେଲେ ଗ୍ରହମାନଙ୍କର ଉପଗ୍ରହ । ଆମ ପୃଥିବୀର ଗୋଟିଏ ଉପଗ୍ରହ ଅଛି । ତାକୁ ଆମେ କହୁଁ ଚନ୍ଦ୍ର । ଶୁକ୍ଳପକ୍ଷ ରାତିରେ ଚନ୍ଦ୍ର ବେଶ୍ ସଫା ଦେଖାଯାଏ ।

ରାତିରେ ଆକାଶକୁ ଚାହିଁଲେ ଆମେ ଚନ୍ଦ୍ର ଛଡ଼ା ଆହୁରି ଅନେକ ଉଜ୍ଜ୍ୱଳ ପଦାର୍ଥ ଦେଖିପାରିବା । ସେମାନଙ୍କୁ ସାଧାରଣତଃ ଆମେ ନକ୍ଷତ୍ର ବୋଲି କହୁଥାଉଁ । କିନ୍ତୁ ଦିନରେ ଯେଉଁ ସୂର୍ଯ୍ୟଟି ଆକାଶରେ ରହି ଆମର ଏଇ ପ୍ରକାଣ୍ଡ ପୃଥିବୀକୁ ଆଲୁଅ ଦିଏ ସେଇଟି ମଧ୍ୟ ଗୋଟିଏ ନକ୍ଷତ୍ର । ଏଣ୍ଡେ ତେଜସ୍ୱାନ୍ ସୂର୍ଯ୍ୟ ଯେପରି ଗୋଟିଏ ନକ୍ଷତ୍ର, ଆକାଶରେ ଜୁକୁ ଜୁକୁ ଦେଖାଯାଉଥିବା ପଦାର୍ଥ-ଗୁଡ଼ିକ ସେଇପରି ଗୋଟିଏ ଗୋଟିଏ ନକ୍ଷତ୍ର । ଏହା ଅସମ୍ଭବ ବୋଧ ହେଉଥିବ, ମାତ୍ର କଥାଟା ପୂରା ସତ ।

ଏଣୁ ନକ୍ଷତ୍ର କଣ ? ପଣ୍ଡିତମାନେ କହନ୍ତି ଯେ ଆକାଶରେ ଦେଖାଯାଉଥିବା ଉଜ୍ଜ୍ୱଳ ପଦାର୍ଥମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇ ପାରେ । ଯେଉଁମାନଙ୍କର ନିଜର ଆଲୁଅ ଅଛି, ସେମାନେ ଗୋଟିଏ ଶ୍ରେଣୀର । ସେମାନଙ୍କୁ ନକ୍ଷତ୍ର କୁହାଯାଏ ଆଉ ଗୋଟିଏ ଶ୍ରେଣୀର ନିଜର ଆଲୁଅ ନାହିଁ । ସେମାନେ ନକ୍ଷତ୍ରଠାରୁ ଯାହା କିଛି ଆଲୁଅ ପାଇ ଉଜ୍ଜ୍ୱଳ ଦିଶନ୍ତି । ଚନ୍ଦ୍ରର ନିଜର ଆଲୁଅ ନାହିଁ । ସେ ସୂର୍ଯ୍ୟଠାରୁ ଆଲୁଅ ପାଏ । ତେଣୁ ଚନ୍ଦ୍ରକୁ ନକ୍ଷତ୍ର କହିଲେ ଭୁଲ ହେବ ।

ତୁମେ ପଚାରିପାର, ସୂର୍ଯ୍ୟ ଯେବେ ଗୋଟିଏ ନକ୍ଷତ୍ର ତେବେ ଅନ୍ୟ ନକ୍ଷତ୍ରମାନେ ସୂର୍ଯ୍ୟ ପରି ବଡ଼ ଦିଶନ୍ତି ନାହିଁ କାହିଁକି ? ସୂର୍ଯ୍ୟ ପରି ସେମାନେ ଆମକୁ ଆଲୋକ ଓ ଉତ୍ତାପ ଦିଅନ୍ତି ନାହିଁ କାହିଁକି ?

ଏହାର ଉତ୍ତର ବୁଝାଯାଉଛି । ତୁମ୍ଭେମାନେ ଜାଣ ଯେ କୌଣସି ପଦାର୍ଥ ଯେତେକ ଦୂରରେ ଥାଏ, ତାହା ସେତେକ ଛୋଟ ଦେଖାଯାଏ । ଯେଉଁ ସୂର୍ଯ୍ୟଙ୍କୁ ଆମ୍ଭେ ପ୍ରତ୍ୟହ ଦେଖୁଛୁ ସେଇଟି ଆକାରରେ କେତେ ବଡ଼ ! ସୂର୍ଯ୍ୟ ହେଉଛି ଆମ ପୃଥିବୀର ୧୨୫୦୦୦୦ ଗୁଣ । ଅର୍ଥାତ୍ ଆମର ପୃଥିବୀ ଭଳି ବାରଲକ୍ଷ ପଚାଶ ହଜାର ପୃଥିବୀକୁ ଏକାଠି କଲେ ଯେତିକି ହେବ ସୂର୍ଯ୍ୟ ଏକା ସେତିକିଟିଏ । ଏଥିରୁ ଅନୁମାନ କରିପାରିବ ଯେ ସୂର୍ଯ୍ୟ କେତେ-ବଡ଼ । ମାତ୍ର ସେ ପୃଥିବୀଠାରୁ ବହୁତ ଦୂରରେ ଥିବାରୁ ଏତେ ଛୋଟ ଦେଖାଯାଉଅଛନ୍ତି । ପୃଥିବୀଠାରୁ ସୂର୍ଯ୍ୟଙ୍କ ଦୂରତା ପ୍ରାୟ ପନ୍ଦର କୋଟି କିଲୋମିଟର । ଏହି ଦୂରତାକୁ ଗୋଟିଏ ଉଦାହରଣ ଦେଲେ ସହଜରେ ବୁଝିପାରିବ । ଗୋଟିଏ ଉଡ଼ାଜାହାଜର ବେଗ ଯଦି ଘଣ୍ଟାକେ ଚାରିଶହ କିଲୋମିଟର ହୁଏ ଏବଂ ସେ ଉଡ଼ାଜାହାଜ ଯେବେ ମୁହୂର୍ତ୍ତେ ନ ଅଟକି ଚାଲେ, ତେବେ ପୃଥିବୀଠାରୁ ସୂର୍ଯ୍ୟଙ୍କୁ ଯିବାକୁ ଲାଗିଯିବ ୪୩ ବର୍ଷରୁ କିଛି ବେଶୀ । ଅର୍ଥାତ୍ ଯଦି କୌଣସି ଲୋକ ଏପରି ଉଡ଼ାଜାହାଜରେ ବସିଲାବେଳକୁ ୨୦ ବର୍ଷର ଯୁବକ ହୋଇ-ଥାଏ, ତେବେ ସେ ସୂର୍ଯ୍ୟପାଖେ ପହଞ୍ଚିଲା ବେଳକୁ ୬୩ ବର୍ଷର ବୁଢ଼ା ହୋଇ ଯାଇଥିବ ।

ବର୍ତ୍ତମାନ ନକ୍ଷତ୍ର କଥା ଧରାଯାଉ । ଗୋଟିଏ ଗୋଟିଏ ନକ୍ଷତ୍ର ଆମଠାରୁ ଏତେ ଦୂରରେ ଅଛନ୍ତି ଯେ, ସେ ସଂଖ୍ୟାକୁ ଅଙ୍କରେ ପ୍ରକାଶ କରିବା କଠିନ ହେବ । ପୃଥିବୀର ସବୁଠାରୁ ନିକଟ ନକ୍ଷତ୍ରଟିର ଦୂରତା ପ୍ରାୟ ୪୧୦,୦୦୦୦୦୦୦୦୦୦୦ (ଚାରିଲକ୍ଷ ଦଶ-ହଜାର କୋଟି କିଲୋମିଟର) । ଏ ନକ୍ଷତ୍ର ତୁଳନାରେ ସୂର୍ଯ୍ୟ କେତେ ପାଖରେ ଅଛି ଅନୁମାନ କର । ଯେଉଁ ନକ୍ଷତ୍ରସବୁ ଏତେ

ଦୂରରେ ଅଛନ୍ତି ସେମାନେ ଯେ ଆମକୁ ଗୋଟିଏ ଗୋଟିଏ ଆଲୋକ ବିନ୍ଦୁ ପରି ଦେଖାଯିବେ ଏଥିରେ ଆଉ ଆଶ୍ଚର୍ଯ୍ୟ କଣ ?

ଆମର ସୂର୍ଯ୍ୟ ଚାରିପାଖେ କେତୋଟି ଗ୍ରହ ଅଛନ୍ତି । ସେମାନଙ୍କ ମଧ୍ୟରୁ ପୁଣି କେତେକଙ୍କର ଉପଗ୍ରହ ଅଛନ୍ତି । ଗ୍ରହମାନେ ସୂର୍ଯ୍ୟଙ୍କ ଚାରିପାଖେ ଆପଣା ଆପଣା ବାଟରେ ବୁଲୁଥାନ୍ତି । ସୂର୍ଯ୍ୟଙ୍କର ନିକଟତମ ଗ୍ରହଟିର ନାମ ବୁଧ । ସୂର୍ଯ୍ୟଠାରୁ ବୁଧ ସାଢ଼େ ତିନି କୋଟି ମାଇଲ ଦୂରରେ ଥାଏ । ସୂର୍ଯ୍ୟ ଚାରିପାଖେ ଥରେ ବୁଲି ଆସିବାକୁ ଏହାକୁ ୮୮ ଦିନ ଲାଗେ । ପୃଥିବୀଠାରୁ ଆହୁରି ବେଗରେ ବୁଧ ଗ୍ରହ ଭ୍ରମଣ କରୁଛି । ତା'ର ଗତି ପ୍ରତି ସେକେଣ୍ଡରେ ପ୍ରାୟ ୪୮ କି: ମି: । ପୃଥିବୀର ଗତି ହେଉଛି ପ୍ରତି ସେକେଣ୍ଡରେ ପ୍ରାୟ ୩୧ କିଲୋମିଟର ମାତ୍ର । ଅବଶ୍ୟ ବୁଧ ଗ୍ରହ ପୃଥିବୀଠାରୁ ଅନେକ ଛୋଟ । ସତରଟି ବୁଧ ଗ୍ରହ ଏକାଠି କଲେ ଯେତେ ହେବ, ଏକା ପୃଥିବୀଟି ପ୍ରାୟ ସେତେ ।

ପଣ୍ଡିତମାନେ ହିସାବ କରି ବୁଧ ଗ୍ରହ ବିଷୟରେ ଅନେକ କଥା ଜାଣି ପାରିଅଛନ୍ତି । ଏହା ସୂର୍ଯ୍ୟର ଅତି ନିକଟରେ ଥିବାରୁ ଅତ୍ୟନ୍ତ ଉତ୍ତପ୍ତ । ଏଥିରେ ପୃଥିବୀ ପରି ଜଳସ୍ଥଳ କିଛି ନାହିଁ । ଏହା ଗୋଟିଏ କେବଳ ଉତ୍ତପ୍ତ ବାଷ୍ପମୟ ପିଣ୍ଡ । ଏପରି ଗରମ ସ୍ଥାନରେ ଜୀବଜନ୍ତୁ ବା ଗଛଲତା କାହୁଁ ହେବ ?

ସୂର୍ଯ୍ୟଠାରୁ ଆଉ ଟିକିଏ ବେଶୀ ଦୂରରେ ଶୁକ୍ରଗ୍ରହ ଅବସ୍ଥିତ । ସୂର୍ଯ୍ୟଠାରୁ ଏହା ୧୦,୮୬୦୦୦୦୦୦ ( ଦଶକୋଟି ଛୟାଅଶିଲକ୍ଷ କିଲୋମିଟର ଦୂରରେ ରହି ସୂର୍ଯ୍ୟ ଚାରିପାଖେ ବୁଲୁଅଛି । ଥରେ ସୂର୍ଯ୍ୟ ଚାରିପାଖେ ପ୍ରଦକ୍ଷିଣ କରି ଆସିବାକୁ ଏହାକୁ ୨୨୫ ଦିନ ଲାଗେ । ଶୁକ୍ର ମଧ୍ୟ ବୁଧପରି ପୃଥିବୀଠାରୁ ଅନେକ ଛୋଟ ।

ବୁଧ ଓ ଶୁକ୍ର ଏ ଦୁଇଟି ଗ୍ରହ ନଜ ନଜର ମେରୁଦଣ୍ଡ ଉପରେ ବୁଲନ୍ତି ନାହିଁ । ତେଣୁ ସେମାନଙ୍କର ଯେଉଁ ପାଖଟି ସୂର୍ଯ୍ୟ ଆଡ଼କୁ ଥାଏ, ସେ ପାଖେ ସବୁବେଳେ ଦିନ ଓ ଆଉ ପାଖଟିରେ ସବୁ



ବେଳେ ରାତି ହୋଇଥାଏ । ଏହାର ଯେଉଁ ଅଂଶଟି ଆଦୌ ସୂର୍ଯ୍ୟ କିରଣ ପାଉନଥିବ ସେ ଅଂଶଟି ଅତ୍ୟନ୍ତ ଶୀତଳ ହୋଇଥିବ ।

ଶୁକ୍ର ଗ୍ରହଟି ଗୋଟିଏ ଉଜ୍ଜ୍ୱଳ ତାରାପରି ଆମ୍ଭମାନଙ୍କୁ ଦେଖାଯାଏ । ସନ୍ଧ୍ୟାବେଳେ ଏହା ଚନ୍ଦ୍ରଠାରୁ ଅଳ୍ପ ଦୂରରେ ଦେଖା-ହଏ । ପୁଣି ପାହାନ୍ତିଆ ବେଳକୁ ଖୁବ୍ ଉଜ୍ଜ୍ୱଳ ହୋଇ ଦେଖାଯାଏ । ତାକୁ ପାହାନ୍ତିଆ ତାରାବୋଲି ଆମେ କହୁଁ ।

ବୁଧ ଓ ଶୁକ୍ର ପରେ ଆମର ପୃଥିବୀ । ଏହାର ସୂର୍ଯ୍ୟପାଖେ ଥରେ ବୁଲି ଆସିବାକୁ ହେଲେ ପ୍ରାୟ ୪° ହଜାର କିଲୋମିଟର ଯିବାକୁ ପଡ଼େ । ଏହାର ଉତ୍ତର ଓ ଦକ୍ଷିଣ ମୁଣ୍ଡ ସାମାନ୍ୟ ଚେପ୍ଟା । ଏଇ ଦୁଇପ୍ରାନ୍ତ ଅତ୍ୟନ୍ତ ଶୀତଳ ।

ପୃଥିବୀର ପଡ଼ୋଶୀ ହେଉଛି ମଙ୍ଗଳ । ପୃଥିବୀଠାରୁ ଏହାର ଆକାର ଅନେକ ଛୋଟ । ଆଠଟି ମଙ୍ଗଳ ଗ୍ରହ ଏକାଠି ହେଲେ ଆମ ପୃଥିବୀ ସଙ୍ଗେ ସମାନ ହେବ । ପୃଥିବୀଠାରୁ ମଙ୍ଗଳର ଦୂରତା ୭ କୋଟି ୮° ଲକ୍ଷ କିଲୋମିଟର ଏବଂ ସୂର୍ଯ୍ୟଠାରୁ ଏହାର ଦୂରତା ୨୨ କୋଟି ୭୨ ଲକ୍ଷ କିଲୋମିଟର ।

ମଙ୍ଗଳ ପୃଥିବୀ ପରି ନିଜର ଅକ୍ଷ ବା ମେରୁଦଣ୍ଡ ଚାରିପାଖେ ବୁଲିବା ସଙ୍ଗେ ସଙ୍ଗେ ସୂର୍ଯ୍ୟ ଚାରିପାଖେ ବୁଲେ । ତେଣୁ ଏଥିରେ ଦିନ ଓ ରାତି ହୁଏ । ସୂର୍ଯ୍ୟ ଚାରିପାଖେ ଥରେ ବୁଲି ଆସିବାକୁ ଏହାକୁ ୬୮୭ ଦିନ ଲାଗିଯାଏ ।

ପଣ୍ଡିତମାନେ ନାନା ଉପାୟରେ ମଙ୍ଗଳ ଗ୍ରହ ବିଷୟରେ ଅନେକ କଥା ଜାଣିପାରି ଅଛନ୍ତି । ଏଥିରେ ଜଳ ଓ ବାୟୁ ଅଛି । ତେଣୁ ଏଥିରେ ପ୍ରାଣୀ ଓ ଉଦ୍ଭିଦ ଥିବା ବିଶ୍ୱାସ କରାଯାଏ । କେହି କେହି ବିଶ୍ୱାସ କରନ୍ତି ଯେ ମଙ୍ଗଳ ଗ୍ରହରେ ମନୁଷ୍ୟପରି ବୁଦ୍ଧିମାନ ପ୍ରାଣୀ ଅଛନ୍ତି ।

ମଙ୍ଗଳ ଗ୍ରହ ବିଷୟରେ ଆହୁରି ଅନେକ କଥା ପରେ ବୁଝାଯିବ ।

ମଙ୍ଗଳ ପରେ ବୃହସ୍ପତି । ଏହା ସୂର୍ଯ୍ୟଠାରୁ ୭୭ କୋଟି ୭୮ ଲକ୍ଷ କିଲୋମିଟର ଦୂରରେ ରହି ସୂର୍ଯ୍ୟ ଚାରିପାଖରେ ବୁଲୁଅଛି । ମଙ୍ଗଳର ଦୁଇଟି ଉପଗ୍ରହ ଅଛି; କିନ୍ତୁ ବୃହସ୍ପତିର ନଅଟି ଉପଗ୍ରହ ତା ଚାରିପାଖରେ ବୁଲୁଥାଆନ୍ତି । ବୃହସ୍ପତି ସୂର୍ଯ୍ୟର ଚାରିପାଖେ ଥରେ ବୁଲି ଆସିବାକୁ ୧୨ ବର୍ଷ ଲାଗିଯାଏ ।



ବୃହସ୍ପତିକୁ ଆମର ଜ୍ୟୋତିଷମାନେ କହନ୍ତି ଗ୍ରହରାଜ । ଆକାରରେ ସେ ହେଉଛି ପୃଥିବୀର ୧୩୦୦ ଗୁଣ । ପୃଥିବୀର ଗୋଟିଏ ଚନ୍ଦ୍ର ବୃହସ୍ପତିର ନଅଟି । କିନ୍ତୁ ଗ୍ରହରାଜ ବଡ଼ ମନ୍ଥର ଗତିରେ ଚାଲନ୍ତି । ଆମ ପୃଥିବୀ ସେକେଣ୍ଡକୁ ପ୍ରାୟ ୩୦ କିଲୋମିଟର ବେଗରେ ଯାଉଥିବା ସ୍ଥଳେ ବୃହସ୍ପତିର ସେକେଣ୍ଡକୁ ଗତି ମୋଟେ ୧୩ କିଲୋ-ମିଟର । ବଡ଼ ଶରୀର, ସାଥିରେ ପୁଣି ନଅଟି ଉପଗ୍ରହଙ୍କୁ ନେଇ ଚାଲିବା ବେଳକୁ ଟିକିଏ ଗଜଗମନରେ ଯିବାର କଥା ।

ସୂର୍ଯ୍ୟଠାରୁ ପୃଥିବୀ ଯେତିକି ଦୂରରେ ଅଛି, ବୃହସ୍ପତି ତାର ପାଞ୍ଚଗୁଣ ଦୂରରେ ଅଛି । ତେଣୁ ସେ ଖୁବ୍ ଅଳ୍ପ ସୂର୍ଯ୍ୟକିରଣ ପାଏ । ବୃହସ୍ପତିର ଉପର ବରଫରେ ଆଚ୍ଛାଦିତ ।

ଏତେ ଶୀତଳ ସ୍ଥାନରେ କୌଣସି ଜୀବ ବା ଉଦ୍ଭିଦ ଥିବା ସମ୍ଭବ ନୁହେଁ ।

ମଙ୍ଗଳ ଓ ବୃହସ୍ପତି ମଝିରେ ଆଉ କେତୋଟି ଛୋଟ ଛୋଟ ଗ୍ରହ ଅଛନ୍ତି । ଏଗୁଡ଼ିକ ଏତେ ଛୋଟ ଯେ ସମସ୍ତଙ୍କୁ ଏକାଠି କରି

ହେଲେ ଆମ ପୃଥିବୀର ବୃହତ୍ତମ ଜାଗାରୁ ଛୋଟ ହେବ କି ନା ସନ୍ଦେହ। ଏମାନଙ୍କୁ ଗ୍ରହ ଭିତରେ ଗଣାଯାଏ ନାହିଁ।

ବୃହସ୍ପତି ପରେ ସୂର୍ଯ୍ୟଠାରୁ ୧୪୨ କୋଟି ୭୦ ଲକ୍ଷ କିଲୋମିଟର ଦୂରରେ ରହି ଶନି ଗ୍ରହ ସୂର୍ଯ୍ୟ ଚାରିପାଖେ ବୁଲୁଅଛି। ଶନି ସୂର୍ଯ୍ୟ ଚାରିପାଖେ ଥରେ ବୁଲି ଆସିଲା ବେଳକୁ ଆମ ପୃଥିବୀର ୨୯ (ଅଣତିରିଶ) ବର୍ଷ ଛଅ ମାସ ବିତିଯାଇଥାଏ। ଗତିରେ ଏହା ବୃହସ୍ପତିଠାରୁ ମଧ୍ୟ ଧୀର। ଏହାର ବେଗ ଏକ ସେକେଣ୍ଡରେ ଦଶ କିଲୋମିଟରରୁ ମଧ୍ୟ ଊଣା।

ଶନିର ବୃହସ୍ପତିପରି ନଅଟି ଉପଗ୍ରହ ଅଛି। ସବୁଠାରୁ ବଡ଼ ଉପଗ୍ରହଟିକୁ ଟାଇଟାନ୍ (Titan) କୋହାଯାଏ। ଏହି ଉପଗ୍ରହଟି ଆକାରରେ ବୁଧ ଗ୍ରହଠାରୁ ମଧ୍ୟ ବଡ଼। କେହି କେହି କହନ୍ତି ଯେ ଶନିର ଆଉରି ଗୋଟିଏ ଉପଗ୍ରହ ଅଛି।



ଶନି ଗ୍ରହର ଗୋଟିଏ ବିଶେଷତ୍ୱ ଅଛି। ଏହାର ମଧ୍ୟଭାଗରେ ତିନୋଟି ବଳୟ ଦେଖାଯାଏ।

ପଣ୍ଡିତମାନେ କହନ୍ତି ଯେ ଶନିର କୌଣସି ଉପଗ୍ରହ ଭାଙ୍ଗି ଗୁଣ୍ଡ ହୋଇଯାଇ ଶନିର ଆକର୍ଷଣ ଫଳରେ ତା ଆଡ଼କୁ ଟାଣି

ହୋଇ ଆସି ତା ଗ୍ରହପାଖେ ଘୂରୁଅଛନ୍ତି । ଏହି ବଳୟଗୁଡ଼ିକ ହେଉଛି, ସେହି ଖଣ୍ଡ ବିଖଣ୍ଡ ହୋଇଥିବା ଉପଗ୍ରହ ।

ଏକଥା ଶୁଣି କେତେ ମନେକରି ପାରନ୍ତି ଯେ, ଆମର ଚନ୍ଦ୍ର ବୋଲି ଯେଉଁ ଉପଗ୍ରହଟି ଅଛି ସେଇଟି କେଉଁଦିନ ପୃଥିବୀ ଆଡ଼କୁ ଟାଣି ହୋଇ ଖଣ୍ଡ ଖଣ୍ଡ ହୋଇଯିବ ଓ ବଳୟ ଆକାରରେ ପୃଥିବୀର ଚାରିପାଖେ ରହିଯିବ । ଅବଶ୍ୟ ଏପରି ଘଟିପାରେ; କିନ୍ତୁ ତା ନିକଟ ଭବିଷ୍ୟତରେ ନୁହେଁ । ହଜାର ହଜାର କୋଟି କୋଟି ବର୍ଷ ପର୍ଯ୍ୟନ୍ତ ଏପରି ହେବା ଆଶଙ୍କା ନାହିଁ ।

ୟୁରେନସ୍ ନାମକ ଗ୍ରହଟି ଶନିର ପରବର୍ତ୍ତୀ । ଏହା ସୂର୍ଯ୍ୟ-ଠାରୁ ୨୮୭ କୋଟି ୯୨ ଲକ୍ଷ କିଲୋମିଟର ଦୂରରେ ରହି ତା ଚାରିପାଖେ ବୁଲେ । ଏହାର ବ୍ୟାସ ପ୍ରାୟ ୫୦୦୦୦ କିଲୋମିଟର ଅର୍ଥାତ୍ ପୃଥିବୀ ବ୍ୟାସର ଚାରିଗୁଣ । ଏହାର ଗତି ଅତି ମନ୍ଥର । ସେକେଣ୍ଡକୁ ସାଢ଼େ ଛଅ କିଲୋମିଟର ମାତ୍ର । ଥରେ ସୂର୍ଯ୍ୟ ଚାରିପାଖେ ବୁଲି ଆସିବାକୁ ଏହାକୁ ୮୪ ବର୍ଷ ଲାଗେ । ଏହାର ଚାରୋଟି ଉପଗ୍ରହ ଥିବାର ଜଣାଯାଇଛି ।

ସୂର୍ଯ୍ୟଠାରୁ ୪୪୯ କୋଟି ୫୭ ଲକ୍ଷ କିଲୋମିଟର ଦୂରରେ ନେପ୍‌ଚୁନ୍ ଗ୍ରହ ରହି ସୂର୍ଯ୍ୟକୁ ପ୍ରଦକ୍ଷିଣ କରେ । ଥରେ ସୂର୍ଯ୍ୟକୁ ପ୍ରଦକ୍ଷିଣ କରିବା ପାଇଁ ଏହାକୁ ୧୬୭ ବର୍ଷ ଲାଗେ । ଏହାର ବ୍ୟାସ ୫୫୦୦୦ କିଲୋମିଟର ।

୧୯୩୦ ମସିହାରେ ସୂର୍ଯ୍ୟର ଆଉ ଗୋଟିଏ ଗ୍ରହ ଥିବାର ଜଣାଯାଇଅଛି । ଏହାକୁ ପ୍ଲୁଟୋ ନାମ ଦିଆଯାଇଅଛି । ସୂର୍ଯ୍ୟଠାରୁ ଏହାର ଦୂରତା ୬୩୮୦ କୋଟି କିଲୋମିଟର । ଏହା ୨୫୦ ବର୍ଷରେ

ଥରେ ସୂର୍ଯ୍ୟ ଚାରିପାଖେ ବୁଲିଆସେ । ଆକାରରେ ଏହା ମଙ୍ଗଳ ଗ୍ରହର ପ୍ରାୟ ସମାନ । ସୂର୍ଯ୍ୟଠାରୁ ବହୁଦୂରରେ ଥିବାରୁ ଏହା ଅତ୍ୟନ୍ତ ଶୀତଳ ଓ ଏଥିରେ କୌଣସି ପ୍ରାଣୀ ବା ବୃକ୍ଷ ଥିବାର ଆଶା କରାଯାଏ ନାହିଁ ।

ସୌରଜଗତ ଏହି ଗ୍ରହ ଉପଗ୍ରହ ଘେନି ଗଠିତ । ଏମାନଙ୍କ ଛଡ଼ା ଆଉ ଗ୍ରହ ଏହି ସୌର ଜଗତରେ ଅଛନ୍ତି କି ନା କିଏ କହିବ ? ଆମର ପଣ୍ଡିତମାନେ ନୂଆ ନୂଆ ଯନ୍ତ୍ର ବଳରେ ଆକାଶର ନୂଆ ନୂଆ କଥା ବାହାର କରୁଅଛନ୍ତି । କିଏ କହିବ ଯେ, ଆମେ ସୌର ଜଗତର ସବୁ ଗ୍ରହ ଉପଗ୍ରହଙ୍କୁ ଚିହ୍ନି ସାରିଛୁ ।

ଆମ ସୌର ଜଗତଟି କେତେ ବଡ଼ ଥରେ ଭାବି ଦେଖ । ପ୍ରାୟ ୭୫୦୦,୦୦୦୦୦୦୦୦ସାଢ଼େ ଛଅ ହଜାରକୋଟି ପର୍ଯ୍ୟନ୍ତ ଆମ ସୂର୍ଯ୍ୟଙ୍କ କୁଟୁମ୍ବ ମାଡ଼ି ବସିଛନ୍ତି । ଏହି ସୂର୍ଯ୍ୟ ପରି ଲକ୍ଷ ଲକ୍ଷ ନକ୍ଷତ୍ର ଅଛନ୍ତି । ଏମାନଙ୍କ ଭିତରୁ କାହାର ପରିବାର କେତେ ବଡ଼ କିଏ କହିବ ? ତେବେ ଯେଉଁ ବିଶ୍ୱବ୍ରହ୍ମାଣ୍ଡ ଏହିସବୁ ନକ୍ଷତ୍ରମାନଙ୍କୁ ସ୍ଥାନ ଦେଇଛି ସେଇଟି କେତେ ବଡ଼ ହୋଇ ନଥିବ ?

ଶେଷରେ ଯେଉଁ ବିଧାତା ଏ ବ୍ରହ୍ମାଣ୍ଡ ସୃଷ୍ଟି କରିଛନ୍ତି ସେ କେତେ ହୋଇ ନ ଥିବେ ?

"ବ୍ରହ୍ମାଣ୍ଡ ମାଳ ମାଳ ହୋଇ,
ତୋ ଲୋମକୂପେ ବିରାଜଇ ।"

ପ୍ରକୃତରେ ବ୍ରହ୍ମାଣ୍ଡ କେତେ ବଡ଼ ଭାବିଲେ ବେଳକୁ ମନୁଷ୍ୟର ମୁଣ୍ଡ ଘୂରିଇ ଯିବାର କଥା ।

---

# ମଙ୍ଗଳ ଗ୍ରହର କଥା

ଜଣେ ଖ୍ୟାତନାମା ଇଂରେଜ ଲେଖକ ଖଣ୍ଡିଏ ଉପନ୍ୟାସ ଲେଖିଅଛନ୍ତି । ସେଥିରେ ସେ ବର୍ଣ୍ଣନା କରିଅଛନ୍ତି ଯେ, ମଙ୍ଗଳ-ଗ୍ରହର କେତେକ ଅଧିବାସୀ ଇଂଲଣ୍ଡକୁ ଏକପ୍ରକାର ଯାନରେ ଆସି ସେଠାରେ ଲୋକଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ମଙ୍ଗଳର ଅଧି-ବାସୀ ଓ ସେମାନଙ୍କର ଯୁଦ୍ଧ ସବୁ ବଡ଼ ବିଚିତ୍ର ଧରଣର । ଏବେ ଓଡ଼ିଆରେ ସେହିପରି ଗୋଟିଏ ଉପନ୍ୟାସ ବାହାରିଛି । ଏଥିରେ ପୃଥିବୀର ଦୁଇଜଣ ମନୁଷ୍ୟ ମଙ୍ଗଳଗ୍ରହକୁ ଯାଇଥିବାର ବର୍ଣ୍ଣନା କରାଯାଇଅଛି ।

କିନ୍ତୁ ଉପନ୍ୟାସବର୍ଣ୍ଣିତ ବିଷୟ ସତ୍ୟ ନୁହେଁ; କଳ୍ପନା ମାତ୍ର । ଆଜ ପର୍ଯ୍ୟନ୍ତ ପୃଥିବୀର କୌଣସି ମାନବ ମଙ୍ଗଳ ଗ୍ରହରେ ପହଞ୍ଚି ନାହିଁ କିମ୍ବା ମଙ୍ଗଳ ଗ୍ରହର କୌଣସି ପ୍ରାଣୀ ପୃଥିବୀକୁ ଆସିଥିବାର ପ୍ରମାଣ ନାହିଁ । ବେଳେବେଳେ 'ଉଡ଼ନ୍ତା ଥାଳିଆ'(Flying saucer) କଥା ଶୁଣାଯାଇଥାଏ । କେହି କେହି କହନ୍ତି ଯେ ଏଗୁଡ଼ିକ ମଙ୍ଗଳ ଗ୍ରହର ଲୋକେ ପୃଥିବୀ ଉପରକୁ ଗୁଡ଼ି ଦେଇଅଛନ୍ତି । 'ଉଡ଼ନ୍ତା ଥାଳିଆ' ପ୍ରକୃତରେ ପୃଥିବୀ ଉପରେ କେବେ ଦେଖାଯାଇଛି କି ନା ତାହା ସନ୍ଦେହର ବିଷୟ । ଯାହା ହେଉ, ଏସବୁରୁ ଜଣାଯାଏ ଯେ, ମଙ୍ଗଳ ଗ୍ରହରେ ମନୁଷ୍ୟ ପରି କୌଣସି ବୁଦ୍ଧିମାନ ପ୍ରାଣୀ ଅଛି ବୋଲି ଆମ୍ଭମାନଙ୍କର ବିଶ୍ୱାସ ।

ଆଜକାଲି ବିଜ୍ଞାନର ଅଦ୍ଭୁତ ଉନ୍ନତି ହୋଇଅଛି । ଚନ୍ଦ୍ରକୁ ଯିବାପାଇଁ ବୈଜ୍ଞାନିକମାନେ ଚେଷ୍ଟା କରୁଅଛନ୍ତି । ରୁଷିଆର ବୈଜ୍ଞାନିକମାନେ ଏଥିମଧ୍ୟରେ କେତୋଟି କୃତ୍ରିମ ଚନ୍ଦ୍ର (Sputnik)

ପ୍ରସ୍ତୁତ କରି ତାହାକୁ ପୃଥିବୀର ଚତୁଃପାର୍ଶ୍ବରେ ପରିଭ୍ରମଣ କରି-ବାକୁ ଦେଇ ଗଜଜତର ବସ୍ତୁସ୍ବ ଉତ୍ପାଦନ କରିଅଛନ୍ତି । ଆହୁରି ମଧ୍ୟ ସେମାନେ କ୍ଷେପଣାସ୍ତ୍ରଟିଏ ଚନ୍ଦ୍ରକୁ ପଠାଇ ତାହାର ଫଟୋ ଆଣି ପାରିଛନ୍ତି । ତେଣୁ ପୃଥିବୀର ମାନବ ରକେଟ ଯାନରେ ଜାହାଜରେ ବସି ଦିନେ ମଙ୍ଗଳ ଗ୍ରହରେ ପହଞ୍ଚି ସେଠାରେ ବସତି ସ୍ଥାପନ କରିବା ବର୍ତ୍ତମାନ ଆଉ ପାଗଳର ପ୍ରଳାପ ବୋଲି ବିବେଚିତ ହୋଇ ନ ପାରେ ।

ତୁମ୍ଭେମାନେ ଜାଣ ଯେ ମଙ୍ଗଳ, ପୃଥିବୀପରି ଗୋଟିଏ ଗ୍ରହ କିନ୍ତୁ ଏହା ଆକାରରେ ପୃଥିବୀର ଅଷ୍ଟମାଂଶ ମାତ୍ର । ସୂର୍ଯ୍ୟଠାରୁ ଏହା ୨୨ କୋଟି ୭୭ ଲକ୍ଷ କିଲୋମିଟର ଦୂରରେ ରହି ତାହାକୁ ପ୍ରଦକ୍ଷିଣ କରୁଅଛି । ପୃଥିବୀଠାରୁ ଏହାର ଦୂରତା ସାତ କୋଟି ଏକାଅଶି ଲକ୍ଷ କିଲୋମିଟର ।

ମଙ୍ଗଳ ପୃଥିବୀ ପରି ନିଜର ଅକ୍ଷ ବା ମେରୁଦଣ୍ଡର ଚାରି-ପାଖେ ବୁଲିବା ସଙ୍ଗେ ସଙ୍ଗେ ସୂର୍ଯ୍ୟର ଚାରିପାଖେ ଗତି କରୁଥାଏ । ତେଣୁ ଏଥିରେ ଦିନ ଓ ରାତି ହୁଏ । ସୂର୍ଯ୍ୟ ଚାରିପାଖେ ଥରେ ପ୍ରଦକ୍ଷିଣ କରି ଆସିବାକୁ ଏହାକୁ ୬୮୭ ଦିନ ଲାଗିଥାଏ ।

ପୃଥିବୀଠାରୁ ପ୍ରାୟ ଆଠକୋଟି କିଲୋମିଟର ଦୂରରେ ଅବସ୍ଥିତ ଏହି ଗ୍ରହଟିକୁ ପୃଥିବୀ ପ୍ରତିବେଶୀ କହନ୍ତି । ଶୁକ୍ର ଓ ଚନ୍ଦ୍ର ବ୍ୟତୀତ ଅନ୍ୟ କୌଣସି ଗ୍ରହ ବା ଉପଗ୍ରହ ମଙ୍ଗଳଗ୍ରହ ପରି ପୃଥିବୀର ନିକଟବର୍ତ୍ତୀ ନୁହନ୍ତି ।

ଗୋଟିଏ ବେଗଗାମୀ ବ୍ୟୋମଯାନର ବେଗ ଘଣ୍ଟାରେ ପ୍ରାୟ ୫୦୦ କିଲୋମିଟର । ଧରି ନିଆଯାଉ ଯେ, ବ୍ୟୋମ ପଥରେ

କୌଣସି ବାଧାବିଘ୍ନ ନାହିଁ । ବ୍ୟୋମଯାନଟି ଯଦି ଘଣ୍ଟାକେ ୫୦୦ କିଲୋମିଟର ବେଗରେ ଗତି କରେ, ତେବେ ପୃଥିବୀରୁ ତାହାର ମଙ୍ଗଳଗ୍ରହରେ ପହଞ୍ଚିବାକୁ ପ୍ରାୟ ୬୦ବର୍ଷ ଲାଗିବ । ବର୍ତ୍ତମାନ ବାଧାବିଘ୍ନର କଥା ବିଚାର କରାଯାଉ । ପୃଥିବୀର ଗୋଟାଏ ଗୁଣ ଯେ, ସେ ପ୍ରତ୍ୟେକ ପଦାର୍ଥକୁ ନିଜର କେନ୍ଦ୍ର ଆଡ଼କୁ ଆକର୍ଷଣ କରେ । ଏହାକୁ ମାଧ୍ୟାକର୍ଷଣ ଶକ୍ତି କହନ୍ତି । ଉଡ଼ାଜାହାଜକୁ ଧରଣୀ ମାତା ଏକାବେଳକେ ମଙ୍ଗଳଗ୍ରହ ପର୍ଯ୍ୟନ୍ତ ଯେ ଛାଡ଼ିଦେବେ ଏହା ବିଶ୍ୱାସ କରିହୁଏ ନାହିଁ । ଦ୍ୱିତୀୟତଃ ପୃଥିବୀ ପରି ଅନ୍ୟ ଗ୍ରହମାନଙ୍କର ଆକର୍ଷଣ ମଧ୍ୟ ଅଛି । ମହାଶୂନ୍ୟରେ ଗତି କରୁ କରୁ ଉଡ଼ାଜାହାଜଟି ଅନ୍ୟ କୌଣସି ଗ୍ରହଦ୍ୱାରା ଆକୃଷ୍ଟ ହୋଇଯିବା ଅସମ୍ଭବ ନୁହେଁ ।

ଉଡ଼ାଜାହାଜ ଚଳିବା ପାଇଁ ପେଟ୍ରୋଲ ଆବଶ୍ୟକ କରେ । ଅଳ୍ପ କେତେ ଘଣ୍ଟା ପାଇଁ ଉଡ଼ାଜାହାଜ ପେଟ୍ରୋଲ ବହନ କରି ନେଇଥାଏ । ଅଠର ବର୍ଷ କାଳ ଏକାଦିକ୍ରମେ ଚଳିବା ପାଇଁ ଯେଉଁ ଲକ୍ଷ ଲକ୍ଷ ଟନ୍ ପେଟ୍ରୋଲ ଆବଶ୍ୟକ ହେବ, ତାକୁ କିଏ ନେବ କିଏ ? ଅତଏବ ସାଧାରଣ ଉଡ଼ାଜାହାଜରେ କେହି ମଙ୍ଗଳଗ୍ରହକୁ ଯିବା ସମ୍ଭବପର ନୁହେଁ ।

ଆମ୍ଭେମାନେ ଭୂପୃଷ୍ଠରୁ ଯେତିକି ଊର୍ଦ୍ଧ୍ୱକୁ ଉଠିବା ବାୟୁ ସେତିକି ଊଣା ହୁଏ । ବାୟୁସ୍ୱଳ୍ପସ୍ଥାନ ସ୍ଥାନରେ ପହଞ୍ଚିଲେ ମନୁଷ୍ୟର କି ଶାରୀରିକ ଓ ମାନସିକ ପରିବର୍ତ୍ତନ ଘଟିବ ଓ ସେହି ପରିବର୍ତ୍ତନ ମଧ୍ୟରେ ତାର ପ୍ରାଣଧାରଣ ସମ୍ଭବପର କି ନା, ତାହା ମଧ୍ୟ ଚିନ୍ତାର ବିଷୟ ।

ଊର୍ଦ୍ଧ୍ୱ ସ୍ତରର ବାୟୁମଣ୍ଡଳ ମନୁଷ୍ୟର ଶ୍ୱାସ ଗ୍ରହଣ ପାଇଁ ସମ୍ପୂର୍ଣ୍ଣ ଅନୁପଯୁକ୍ତ; କାରଣ ଏଥିରେ ଅକ୍ସିଜେନର ଅଭାବ । ଏପରିକି ପୃଥିବୀପୃଷ୍ଠରୁ ସାମାନ୍ୟ ତିନି ଚାରି ମାଇଲ ଊର୍ଦ୍ଧ୍ୱକୁ ଉଠିଲେ ସେଠାରେ ବାୟୁରେ ମାନବ ଜୀବନ ଧାରଣ କରିବା ସମ୍ଭବ ନୁହେଁ । ତେଣୁ ଉଚ୍ଚ ପର୍ବତର ଆରୋହଣକାରୀ ମାନେ ସଙ୍ଗରେ ଅମ୍ଳଜାନ ନେଇ ଯାଇଥାନ୍ତି । ଅତଏବ ବ୍ୟୋମପଥରେ ମଙ୍ଗଳ ଗ୍ରହର ଯାତ୍ରୀମାନଙ୍କୁ ନିଜର ଖାଦ୍ୟପେୟ ବ୍ୟତୀତ ଅମ୍ଳଜାନ ମଧ୍ୟ ନେଇ ଯିବାକୁ ପଡ଼ିବ । ଏ ସବୁ ପ୍ରତିବନ୍ଧକ ବିଷୟ ଚିନ୍ତା କଲି ଦେଲକୁ ମନେହୁଏ, ମାନବ ପକ୍ଷରେ ମଙ୍ଗଳ ଗ୍ରହକୁ ଯିବାର ଚେଷ୍ଟା ବାମନର ଚନ୍ଦ୍ରକୁ ହାତ ବଢ଼ାଇବା ମାତ୍ର ।

ପୃଥିବୀର କୌଣସି ମାନବ ମଙ୍ଗଳ ଗ୍ରହକୁ ଯାଇ ନାହାନ୍ତି ସତ୍ୟ; କିନ୍ତୁ ବୈଜ୍ଞାନିକମାନେ ମଙ୍ଗଳଗ୍ରହ ବିଷୟରେ ଅନେକ ତଥ୍ୟ ସଂଗ୍ରହ କରି ପାରିଅଛନ୍ତି । ବୋଧହୁଏ, ମଙ୍ଗଳଗ୍ରହ ବିଷୟରେ ଆମ୍ଭମାନଙ୍କର ଜ୍ଞାନ ଯେତେ ବେଶୀ, ଅନ୍ୟ କୌଣସି ଗ୍ରହ ବିଷୟରେ ସେତେ ନୁହେଁ । ଏହାର ପ୍ରଧାନ କାରଣ ହେଉଛି ମଙ୍ଗଳ ପୃଥିବୀର ନିକଟତମ ଗ୍ରହ ।

ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ, ମଙ୍ଗଳର ଉପରିଭାଗ ପୃଥିବୀର ଉପରିଭାଗ ପରି କଠିନ । ଏକ ପ୍ରକାର ଦୂରବୀକ୍ଷଣ ଯନ୍ତ୍ର ଅଛି; ତା ସାହାଯ୍ୟରେ ଚାହିଁଲେ ମଙ୍ଗଳଗ୍ରହ ସ୍ପଷ୍ଟ ଦେଖିହୁଏ । ଯେତେବେଳେ ପୃଥିବୀ ସୂର୍ଯ୍ୟର ଚାରିପାଖେ ପ୍ରଦକ୍ଷିଣ କରୁ କରୁ ସୂର୍ଯ୍ୟ ଓ ମଙ୍ଗଳର ମଧ୍ୟବର୍ତ୍ତୀ ହୁଏ, ସେତେବେଳେ ଆମ୍ଭେମାନେ ମଙ୍ଗଳକୁ ଉତ୍ତମରୂପେ ଦେଖି ପାରୁଁ । କିନ୍ତୁ ଏପରି ସୁଯୋଗ ଅନେକ ବର୍ଷରେ ଥରେ ମାତ୍ର ମିଳଥାଏ ।

ପୃଥିବୀଠାରୁ ମଙ୍ଗଳର ଦୂରତ୍ୱ ସର୍ବଦା ସମାନ ନ ଥାଏ । ଏହାର ନିକଟତମ ଦୂରତା ପ୍ରାୟ ସାଢ଼େ ତିନକୋଟି କିଲୋମିଟର । ପୃଥିବୀର ପରିଧି ହେଉଛି ପ୍ରାୟ ୪୦୦୦୦ କିଲୋମିଟର । ପୃଥିବୀଠାରୁ ମଙ୍ଗଳର ନିକଟତମ ଦୂରତା ହେଉଛି ଏହାରି ୧୪୦୦ ଗୁଣ । ଅନନ୍ତ ଆକାଶ ରାଜ୍ୟରେ ପୃଥିବୀର ନିକଟତମ ପ୍ରତିବେଶୀ ଯେ ଏତିକି ଦୂରରେ ରହେ, ଏଥିରେ ବିସ୍ମିତ ହେବାର କୌଣସି କାରଣ ନାହିଁ । ଖାଲି ଆଖିରେ ଦେଖିଲେ ମଙ୍ଗଳ ଗ୍ରହକୁ ରକ୍ତବର୍ଣ୍ଣର ଉଜ୍ଜ୍ୱଳ ତାରକାଟିଏ ପରି ଦିଶେ । ସମଗ୍ର ଆକାଶରେ ମଙ୍ଗଳ ପରି ଉଜ୍ଜ୍ୱଳ ତାରକାର ସଂଖ୍ୟା ଖୁବ୍ କମ୍ ।

ଦୂରବୀକ୍ଷଣ ଯନ୍ତ୍ରରେ ଦେଖିଲେ ମଙ୍ଗଳର ଦୁଇପ୍ରକାର ଅଂଶ ଦେଖାଯାଏ, ଗୋଟିଏ ଅଂଶ ଉଜ୍ଜ୍ୱଳ ଓ ରକ୍ତିମ, ଅପର ଅଂଶଟି ଟିକିଏ ନୀଳବର୍ଣ୍ଣର । ମଙ୍ଗଳର ଆଠଭାଗରୁ ପ୍ରାୟ ତିନି ଭାଗ ଏହିପରି ନୀଳ । ଏହି ବିଭିନ୍ନ ଅଂଶ ଦୁଇଟି ପ୍ରକୃତ ପକ୍ଷରେ କଅଣ ସେ ବିଷୟରେ ବୈଜ୍ଞାନିକମାନେ ଏକମତ ନୁହନ୍ତି । କେତେକଙ୍କ ମତରେ ନୀଳ ଅଂଶଟି ହେଉଛି, ମଙ୍ଗଳରେ ଥିବା ଜଳରାଶି ଓ ରକ୍ତ ଅଂଶଟି ସ୍ଥଳଭାଗ । ସ୍ଥଳଭାଗଟି ବୋଧହୁଏ ବାଲୁକାମୟ । ତାହା ଉପରେ ସୂର୍ଯ୍ୟ କିରଣ ପଡ଼ିବାରୁ ଏପରି ଲାଲ୍ ଦେଖାଯାଏ ।

ମଙ୍ଗଳର ଉଭୟ ମେରୁ ତୁଷାରଦ୍ୱାରା ଆଚ୍ଛାଦିତ । ଋତୁ ଅନୁସାରେ ଏହି ତୁଷାରର ପରିମାଣ କେତେବେଳେ ବୃଦ୍ଧି ପାଏ ପୁଣି କେତେବେଳେ ହ୍ରାସ ପାଏ । ପଣ୍ଡିତମାନଙ୍କର ଅନୁମାନ ଯେ ଗ୍ରୀଷ୍ମ ଋତୁରେ ମେରୁ ପ୍ରଦେଶର ତୁଷାର ବିଗଳିତ ହୋଇ ମଧ୍ୟଭାଗକୁ ବହିଯାଏ । ବେଳେ ବେଳେ ମଙ୍ଗଳର ମଧ୍ୟଭାଗରେ କେତେକ ଲମ୍ବା ଲମ୍ବା ଦାଗ ଦେଖାଯାଏ । ସେଗୁଡ଼ିକ ଏହି ବିଗଳିତ ତୁଷାର ସ୍ରୋତ ହୋଇପାରେ ।

ଅନ୍ୟ କେତେକ ପଣ୍ଡିତ ଏହି ନାଲ ଅଂଶକୁ ସମୁଦ୍ର ବୋଲି ସ୍ୱୀକାର କରନ୍ତି ନାହିଁ । ଏହି ନାଲରଙ୍ଗ ସବୁଠାରେ ସମାନ ଭାବରେ ଗାଢ଼ ନୁହେଁ ଏବଂ ଭିନ୍ନ ଭିନ୍ନ ସମୟରେ ରଙ୍ଗ ଟିକିଏ ଟିକିଏ ବଦଳୁଥାଏ । ଏହା ସମୁଦ୍ର ହୋଇଥିଲେ ଏପରି ହୁଅନ୍ତା ନାହିଁ । ଆଉ କେହି କେହି କହନ୍ତି ଯେ, ମଙ୍ଗଳରେ ବୃକ୍ଷଲତା ଅଛି, ତେଣୁ ଏହାର କେତେକ ଅଂଶ ନାଲ ଦେଖାଯାଏ । ଏ ସବୁ ମତ ମଧ୍ୟରୁ କେଉଁଟି ଭ୍ରମଶୂନ୍ୟ ତାହା ସ୍ଥିର କରିବା ଦୁରୂହ ।

ମଙ୍ଗଳ ଗ୍ରହରେ ଜଳ ଅଛି ବୋଲି ଅଧିକାଂଶ ବୈଜ୍ଞାନିକ ବିଶ୍ୱାସ କରନ୍ତି । କିନ୍ତୁ ଏହି ଜଳର ପ୍ରକୃତି ଓ ପରିମାଣ ସମ୍ବନ୍ଧରେ କେବଳ ଅନୁମାନ ଉପରେ ନିର୍ଭର କରିବାକୁ ପଡ଼େ ।

ବୋଧହୁଏ ମଙ୍ଗଳର ଚାରିପାଖେ ଯେଉଁ ବାୟୁ ଅଛି, ତାହା ଖୁବ୍ ଅଳ୍ପ ଓ ଲଘୁ, କାରଣ ଏହାର ଚାରିପାଖେ ଆକାଶ ପରିଷ୍କୃତ । ମଙ୍ଗଳଗ୍ରହ ଦେହରେ ଅସଂଖ୍ୟ ଦାଗ ଦେଖାଯାଏ । ଏହି ଦାଗଗୁଡ଼ିକ କାରଣ, ସେ ବିଷୟରେ ନାନା ମତ ଦେଖାଯାଏ । କେହି କେହି କହନ୍ତି, ଏଗୁଡ଼ିକ ମଙ୍ଗଳରେ ଥିବା ନଦୀ, ହ୍ରଦ ପ୍ରଭୃତି । ଅନ୍ୟ କେତେକ କହନ୍ତି ଯେ, ଏଗୁଡ଼ିକ ପ୍ରାକୃତିକ ନଦୀପରି ବଙ୍କା ନୁହନ୍ତି; ଅନେକ ସ୍ଥଳରେ ସିଧା ଓ ସମାନ୍ତରାଳ । ତେଣୁ ସେମାନଙ୍କର ଅନୁମାନ, ଏଗୁଡ଼ିକ ହେଉଛି ମଙ୍ଗଳ ଗ୍ରହର ଅଧିବାସୀମାନଙ୍କଦ୍ୱାରା ନିର୍ମିତ କେନାଲ । ସେମାନେ ମନେ କରନ୍ତି ଯେ, ଏପରି କେନାଲ ନିର୍ମାଣ କରିଥିବା ଜୀବମାନେ ନିଶ୍ଚୟ ମନୁଷ୍ୟଠାରୁ ଊଣା ବୁଦ୍ଧିମାନ ନୁହନ୍ତି ।

ଜୀବନ ଧାରଣ ପାଇଁ ଜଳ, ବାୟୁ ଓ ଆଲୋକ ନିତାନ୍ତ ଆବଶ୍ୟକ ପୃଥିବୀରେ ଏ ସବୁ ଥିବାରୁ ଜୀବଜନ୍ତୁ ରହିଅଛନ୍ତି ।

ମଙ୍ଗଳ ଗ୍ରହରେ ଜଳ, ବାୟୁ ଓ ଆଲୋକ ଥିବାରୁ ସେଥିରେ ଜୀବଜନ୍ତୁ ଥିବାର ଦୃଢ଼ ବିଶ୍ୱାସ ହୁଏ ।

ଆମ ପୃଥିବୀର ଗୋଟିଏ ଚନ୍ଦ୍ର ଅଛି, ମାତ୍ର ମଙ୍ଗଳର ଦୁଇଟି ଚନ୍ଦ୍ର । ଏହି ଚନ୍ଦ୍ରଦ୍ୱୟକୁ ଡାଇମୋ ଓ ଫୋବୋ ନାମରେ ଅଭିହିତ କରାଯାଇଅଛି । ଫୋବୋ ମଙ୍ଗଳର ପାଖେ ପାଖେ ଓ ଡାଇମୋ ଟିକିଏ ଦୂରରେ ରହି ତାହାକୁ ପ୍ରଦକ୍ଷିଣ କରୁଥାନ୍ତି ।

ମଙ୍ଗଳ ଗ୍ରହକୁ ଇଂରେଜୀରେ (Mars) ମାର୍ସ କହନ୍ତି । ମାର୍ସ ଗ୍ରୀକ୍‌ମାନଙ୍କଦ୍ୱାରା ଯୁଦ୍ଧର ଦେବତାରୂପେ ପରିକଳ୍ପିତ । ଗ୍ରୀକ୍‌ମାନେ କଳ୍ପନା କରିଅଛନ୍ତି ଯେ ମାର୍ସଙ୍କର ରଥରେ ଡାଇମୋ ଓ ଫୋବେ ନାମରେ ଦୁଇଟି ଅଶ୍ୱ ସଂଯୁକ୍ତ । ସେଥିନିମନ୍ତେ ମଙ୍ଗଳର ଉପଗ୍ରହ-ଦ୍ୱୟର ଏପରି ନାମକରଣ ହୋଇଅଛି ।

ପୂର୍ବରୁ କୁହାଯାଇଛି ଯେ, ସାଧାରଣ ଉଡ଼ାଜାହାଜଦ୍ୱାରା ମଙ୍ଗଳକୁ ଯିବା ସମ୍ଭବପର ନୁହେଁ । ମାତ୍ର ରକେଟର ଶକ୍ତି ଏତେ ଅଧିକ ଯେ ତାହା ପୃଥିବୀର ମାଧ୍ୟାକର୍ଷଣ ଶକ୍ତିକୁ ଉପେକ୍ଷା କରିପାରେ । କୌଣସି ପଦାର୍ଥ ପୃଥିବୀର ଉପରକୁ ବହୁଦୂର ଗଲା ପରେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ତାକୁ ଆଉ ଟାଣି ଆଣି ପାରିବ ନାହିଁ । ରୁଷିଆର ବୈଜ୍ଞାନିକମାନେ ରକେଟ୍ ସାହାଯ୍ୟରେ ଯେଉଁ କୃତ୍ରିମ ଉପଗ୍ରହଗୁଡ଼ିକୁ ପୃଥିବୀର ଚାରିପାଖେ ଭ୍ରମଣ କରିବାକୁ ଛାଡ଼ି ଦେଇଥିଲେ, ସେଗୁଡ଼ିକ ଘଣ୍ଟାରେ ପ୍ରାୟ ୨୭୦୦୦ କିଲୋମିଟର ବେଗରେ ଗତି କରୁଥିଲେ । ଅଧିକନ୍ତୁ ମଧ୍ୟ ଶକ୍ତି ଯୋଗାଇବା ନିମନ୍ତେ ପେଟ୍ରୋଲ ପରିବର୍ତ୍ତେ ଅନ୍ୟ ପଦାର୍ଥ ଉଦ୍ଭାବିତ ହୋଇ-ଥିବାର ସମ୍ବାଦ ମିଳେ । ତେଣୁ ରକେଟ୍‌ଯାନ ନିର୍ମିତ ଲକ୍ଷ

ଲକ୍ଷ ଟନ୍ ପେଟ୍ରୋଲ ଦରକାର ହେବ ନାହିଁ । ଯଦି ବୈଜ୍ଞାନିକ-ମାନଙ୍କର ପରୀକ୍ଷା ସଫଳ ହୁଏ, ତେବେ ଗୋଟିଏ ରକେଟ୍‌ଯାନ ଘଣ୍ଟାରେ ୨୭୦୦୦ କିଲୋମିଟର ବେଗରେ ଗତି କରି ମଙ୍ଗଳ ଗ୍ରହରେ ପ୍ରାୟ ୧୨୦ ଦିନରେ ପହଞ୍ଚି ପାରିବ ।

ଆଧୁନିକ ବିଜ୍ଞାନ ଏପରି ଉଚ୍ଚ ସ୍ତରରେ ପହଞ୍ଚିଲାଣି ଯେ, ଗ୍ରହ-ଜଗତରେ ପରିଭ୍ରମଣ ଆଉ କଳ୍ପନାରେ ନରହି କାର୍ଯ୍ୟରେ ପରିଣତ ହେବାର ଖୁବ୍ ସମ୍ଭବ ।

# ପ୍ରଶ୍ନାବଳୀ

## ଏବେ ପାଇଲି

୧ । ସିରାକ୍ୟୁଜର ରଜା କପରି ମୁକୁଟ ତିଆରି କରାଇବାକୁ ଇଚ୍ଛା କରିଥିଲେ ?

୨ । ଆର୍କିମିଡ଼ସ ମୁକୁଟକୁ ନ ଭାଙ୍ଗି କପରି ସେଥିରେ ଖାଦ ଅଛି ବୋଲି ଜାଣିପାରିଲେ ?

୩ । ବିଶୁଦ୍ଧ ସୁନା ଓ ମିଶା ସୁନା ମଧ୍ୟରେ କି ପ୍ରଭେଦ ଅଛି ବୋଲି ଏହି ପାଠରୁ ଜାଣିଲ ।

## ବୁଦ୍ଧିର ବଳ

୧ । ସିରାକ୍ୟୁଜର ଲୋକେ କାହିଁକି ରୋମାନ୍‌ମାନଙ୍କ ଆକ୍ରମଣକୁ ଏତେ ଭୟ କରୁଥିଲେ ?

୨ । ରୋମାନ୍‌ମାନଙ୍କ ଯୁଦ୍ଧ ଜାହାଜଗୁଡ଼ିକୁ ପୋଡ଼ିଦେବା ପାଇଁ ଆର୍କିମିଡ଼ସ କି ଉପାୟ କଲେ ?

୩ । ରୋମାନ୍ ଯୁଦ୍ଧଜାହାଜଗୁଡ଼ିକର କି ଦଶା ଘଟିଲା ?

୪ । ଖଣ୍ଡିଏ ପୁରୁଣା କାଚ ସାହାଯ୍ୟରେ ତୁମେ କପରି ନିଆଁ ବାହାର କରି ପାରିବ ?

## ଆବିଷ୍କାର ପାଇଁ ଜୀବନ ପଣ

୧ । ଆଗକାଳରେ ଲୋକେ ଅସ୍ତ୍ରୋପଚାରକୁ ଏତେ ଭୟ କରୁଥିଲେ କାହିଁକି ?

୨ । ସିମ୍ପସନ୍ ଅନ୍ୟ ଲୋକଙ୍କ ଉପରେ କାହିଁକି କ୍ଲୋରୋଫର୍ମର ପରୀକ୍ଷା କଲେ ନାହିଁ ?

୩ । ଡାକ୍ତର ସିମ୍ପସନ୍ କେଉଁ ଘଟଣା ଫଳରେ ଅଧ ଘଣ୍ଟା ଗୁଡ଼ି ଶୋଇଥିଲେ ?

## ପଶୁପକ୍ଷୀଙ୍କର ବୁଦ୍ଧି ଅଛି କି ?

୧ । ପଶୁମାନଙ୍କଠାରେ ବୁଦ୍ଧି ବିଷୟରେ ତୁମ୍ଭେମାନେ ଜାଣିଥିବା କୌଣସି ଘଟଣା ବର୍ଣ୍ଣନ କର ।

୨ । ପଶୁମାନେ ମନୁଷ୍ୟର କେଉଁ କେଉଁ କାମରେ ଲାଗନ୍ତି ?

୩ । କୁକୁର ନଥିଲେ ମନୁଷ୍ୟର କି କି ଅସୁବିଧା ହୁଅନ୍ତା ?

୪ । ଚୈତକ ତାର ପ୍ରଭୁଙ୍କ ପାଇଁ କଅଣ କରିଥିଲା ?

## ପବନର ମୂଲ୍ୟ

୧ । ପବନର ସବୁଠାରୁ ମୂଲ୍ୟବାନ ଜିନିଷ କାହିଁକି ?

୨ । ପବନଦ୍ୱାରା ମନୁଷ୍ୟ କି କି କାର୍ଯ୍ୟ କରୁଅଛି ?

## ମୂକ ବଧିରଙ୍କ ଶିକ୍ଷା

୧ । ଅଧିକାଂଶ ବଧିର ଲୋକ ମୂକ ମଧ୍ୟ ହୁଅନ୍ତି । ଏଥିର କାରଣ କଅଣ ?

୨ । ମୂକ-ବଧିରମାନଙ୍କ ଶିକ୍ଷା ପାଇଁ ଇଂଲଣ୍ଡ ଓ ଆମେରିକାରେ କଅଣ କରାଯାଇଅଛି ?

୩ । ଭାରତରେ ମୂକ ଓ ବଧିରମାନଙ୍କ ଶିକ୍ଷାର କି ସୁବିଧା ଅଛି ?

୪ । ଓଡ଼ିଶାର କୌଣସି ଉଚ୍ଚଶିକ୍ଷିତ ମୂକ-ବଧିରଙ୍କ ବିଷୟରେ ଯାହା ଜାଣ ଲେଖ ?

## ସମ୍ବାଦ ପ୍ରେରଣ

୧ । ତୁମର କୌଣସି ଦୂରବର୍ତ୍ତୀ ବନ୍ଧୁଙ୍କ ସହିତ ତୁମ୍ଭେ କି କି ଉପାୟରେ ସମ୍ବାଦ ବିନିମୟ କରିପାରିବ ?

୨ । ଡାକଟିକଟର ପ୍ରଚଳନଦ୍ୱାରା କି ସୁବିଧା ହୋଇଅଛି ?

୩ । ଟେଲିଗ୍ରାଫ, ଟେଲିଫୋନ ଓ ବେତାର କିପରି ସମ୍ବାଦ ପ୍ରେରଣରେ ସାହାଯ୍ୟ କରନ୍ତି ?
୪ । ଟେଲିପ୍ରିଣ୍ଟର କଅଣ ? ଏହାଦ୍ୱାରା ସମ୍ବାଦପତ୍ରର କି ସୁବିଧା ହୋଇଅଛି ?

---

## ମଣିଷ ପାଖେ ଏଭରେଷ୍ଟ ହାରିଲା

୧ । ନୂତନ ସ୍ଥାନ ଆବିଷ୍କାର କରିବା ପାଇଁ ଲୋକେ କାହିଁକି ଚେଷ୍ଟା କରନ୍ତି ?
୨ । ହିମାଳୟ ଉପରକୁ ଯିବାରେ କି କି ଅସୁବିଧା ଅଛି ?
୩ । ତେନ୍‌ଜିଂ ଓ ହିଲାରୀ କିପରି ଏଭରେଷ୍ଟ ଉପରକୁ ଗଲେ ?

---

## ତୁମେ ଚନ୍ଦ୍ରକୁ ଯିବ କି ?

୧ । କାହିଁକି ସମସ୍ତେ ଚନ୍ଦ୍ରକୁ 'ମାମୁଁ' ବୋଲି କହନ୍ତି ?
୨ । ଚନ୍ଦ୍ରଗ୍ରହଣ କାହିଁକି ହୁଏ ?
୩ । ଚନ୍ଦ୍ର ବିଷୟରେ ତୁମେ ଯାହା ଜାଣ, କହ ।
୪ । ଋଷିଆର ବୈଜ୍ଞାନିକମାନେ ଚନ୍ଦ୍ରକୁ ଯିବାପାଇଁ କଅଣ କରିଅଛନ୍ତି ?

---

## କେତେଟା ବାଜିଛି ?

୧ । ଘଣ୍ଟା ନ ଥିବା ସମୟରେ ଲୋକେ କିପରି ସମୟ ଜାଣୁ ଥିଲେ ?
୨ । ସୂର୍ଯ୍ୟଘଣ୍ଟା ଓ ଜଳଘଣ୍ଟାଦ୍ୱାରା କିପରି ସମୟ ଜଣାପଡ଼େ ?
୩ । କଳଘଣ୍ଟା ବ୍ୟବହାର କରିବାରେ କି ସୁବିଧା ହୁଏ ?

## କଳର କରାମତ

୧ । ଲୋକେ ଅତି ପୂର୍ବକାଳରେ କପରି ଚଳୁଥିଲେ ?

୨ । କଳଦ୍ୱାରା ମନୁଷ୍ୟର କ'ଣ ସୁବିଧା ହୋଇଅଛି ।

୩ । ମାନସିକ କାର୍ଯ୍ୟ କରୁଥିବା କେତୋଟି କଳର ବିବରଣୀ ଦିଅ ।

## ବ୍ରହ୍ମାଣ୍ଡ କେତେ ବଡ ?

୧ । ଗ୍ରହ ଓ ନକ୍ଷତ୍ର ମଧ୍ୟରେ ପ୍ରଭେଦ କଅଣ ?

୨ । ବୃହସ୍ପତିକୁ ଗ୍ରହରାଜ କହିବା କେତେଦୂର ସମୀଚୀନ ?

୩ । ଶନିର କଟିଦେଶରେ ଯେଉଁ ବଳୟ ଦେଖାଯାଏ, ତାହା କଅଣ ?

୪ । ସୂର୍ଯ୍ୟଠାରୁ ଦୂରତା ଅନୁସାରେ ଗ୍ରହମାନଙ୍କର ନାମ ଯଥାକ୍ରମେ କହିଯାଅ ।

୫ । ଗ୍ରହ ଓ ଉପଗ୍ରହ ମଧ୍ୟରେ ପ୍ରଭେଦ କଅଣ ? କେଉଁ ଗ୍ରହର କେତୋଟି ଉପଗ୍ରହ ଅଛି ?

## ମଙ୍ଗଳଗ୍ରହର କଥା

୧ । ମଙ୍ଗଳଗ୍ରହ ସହିତ ପୃଥିବୀର ତୁଳନା କର ।

୨ । ମଙ୍ଗଳର ଉପଗ୍ରହଦ୍ୱୟର ନାମ କଅଣ ? ସେପରି ନାମକରଣ କାହିଁକି ହୋଇଅଛି ?

୩ । ମନୁଷ୍ୟ ପକ୍ଷରେ ମଙ୍ଗଳ ଗ୍ରହକୁ ଯିବାର କି ସମ୍ଭାବନା ଅଛି ?

ମୁଦ୍ରାକର : ଶ୍ରୀ [illegible] ମହାପାତ୍ର, ଲୋକସାହିତ୍ୟ ପ୍ରିଣ୍ଟିଂ କମ୍ପାନୀ,
କଟକ